ଉତ୍କଳମଣି ଗୋପବନ୍ଧୁଙ୍କ ସ୍ମୃତି ଉପଲକ୍ଷେ

**ପୂଜ୍ୟପୂଜା ସଂସଦ, ଓଡ଼ିଶା**

ଆନୁକୂଲ୍ୟରେ ପ୍ରକାଶିତ

ସଂପାଦକ



ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ

## ସୂଚୀ



ଆବିର୍ଭାବ
ତା ୯-୧୦-୧୮୭୭

ତିରୋଭାବ
ତା ୨୬-୬-୧୯୫୮

ପ୍ରଣମାମି ତବ ଶ୍ରୀଚରଣ.........

# ସାହିତ୍ୟ-ସ୍ରଷ୍ଟା ଗୋପବନ୍ଧୁ

ଲୋକ ସେବାରେ ଜୀବନ ଉତ୍ସର୍ଗ କରି ସାହିତ୍ୟିକ ଗୋପବନ୍ଧୁ ଦେଶସେବାର ଆଦର୍ଶରେ ଏବଂ ଦେଶପ୍ରେମର ସମ୍ଭାରରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ତାଙ୍କର ସରସ, ପ୍ରାଣବନ୍ତ କାବ୍ୟ-କବିତା ଭିତରେ ଆଧୁନିକ ସାହିତ୍ୟ ଏକ ନୂତନ ପରିପାଟୀ ନିଖୁଣ ଭାବରେ ପରିସ୍ଫୁଟ ହୋଇଛି । ପରିମାଣ ଦୃଷ୍ଟିରୁ ତାଙ୍କର ସାହିତ୍ୟ ବିଗ୍ଭର କରାଯାଇ ନ ପାରେ । ତାଙ୍କର ସମସ୍ତ କାବ୍ୟ-କବିତା ଏକତ୍ର କଲେ ଗୋଟିଏ ବିରାଟ ଗ୍ରନ୍ଥାବଳୀର ଆକାର ଧାରଣ କରି ପାରିବନାହିଁ । ମାତ୍ର ଗୋଲ୍ଡ୍‌ସ୍ମିଥ୍ ଖଣ୍ଡିଏ କାବ୍ୟ, ଖଣ୍ଡିଏ ନାଟକ, ଖଣ୍ଡିଏ ଉପନ୍ୟାସ ଲେଖି ଇଂରେଜ ସାହିତ୍ୟର ପ୍ରତି କ୍ଷେତ୍ରରେ ପ୍ରତିଷ୍ଠା ଲାଭକଲା ପରି, ଗୋପବନ୍ଧୁ ତାଙ୍କର ପ୍ରତ୍ୟେକ କାବ୍ୟ କବିତାରେ ଯେଉଁ ମୌଳିକତା, ଦେଶପ୍ରୀତି ଏବଂ ଭାବ-ପ୍ରବଣତା ପ୍ରକଟ କରି ଯାଇଛନ୍ତି ସେଥିରେ ଓଡ଼ିଆ ସାହିତ୍ୟ ଉଦ୍‌ଭାସିତ । ପୁଣି ତା'ଠାରୁ ଅଧିକ ମହନୀୟ ଅବଦାନ ତାଙ୍କର ଗଦ୍ୟ-ସାହିତ୍ୟ । ସାମାଜିକ ସମସ୍ୟା, ଅର୍ଥନୈତିକ ଆଲୋଚନା ଏବଂ ରାଜନୈତିକ ବିଶ୍ଳେଷଣପାଇଁ ଓଡ଼ିଆ ଗଦ୍ୟସାହିତ୍ୟକୁ ସେ ସମାଜ ମାଧ୍ୟମରେ ସରଳ, ସୁନ୍ଦର, ପ୍ରାଣସ୍ପର୍ଶୀ ଭାବରେ ନିୟୋଜିତ କରି ଆଧୁନିକ ସାହିତ୍ୟରେ ଏକ ବିଶିଷ୍ଟ ଧାରା ସୃଷ୍ଟି କରିଯାଇଛନ୍ତି । ତାଙ୍କଠାରୁ ଆରମ୍ଭ ହୋଇଛି ଏକ ନୂତନ ଶୈଳୀର ପ୍ରବର୍ତ୍ତନ । ଆଧୁନିକ ଗଦ୍ୟ-ସାହିତ୍ୟର ସେ ସ୍ରଷ୍ଟା ।

ଡକ୍ଟର ସଦାଶିବ ମିଶ୍ର
କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

ORISSA UNIVERSITY OF
AGRICULTURE & TECHNOLOGY
BHUBANESWAR-3

The attempt of Pujya Puja Samsad to bring out a broachure on the life and teachings of Pandit Gopabandhu Das is a laudable object. Pandit Das has endeared himself to the people of Orissa by his selfless service to the distressed. When Orissa is now passing through a period of great suffering and acute economic crisis, such men are surely needed to provide proper guidance to the people of the State. Pandit Das was not only a social worker with a compassion for the poor and distressed, he was also a valiant fighter for the freedom of the country. He was the first man to bring the message of Gandhiji to Orissa and involved the whole State in the struggle for freedom. He created a band of devoted workers to carry the message of freedom to the people of Orissa. He also made a unique experiment in the educational system of India by establishing a 'National School' at Satyabadi. His love for the country, his passion for freedom and compassion for the poor and the distressed are reflected in his writings which are simple, clear and lucid. I wish our young men could follow the footsteps of Pandit Gopabandhu and bring about a healthy atmosphere in the country.

*Dr. K. Ramiah*
**VICE-CHANCELLOR**



ତା ୨୨ । ୧୧ । ୭୭

ଭୁବନେଶ୍ୱର

# ବାର୍ତ୍ତା

ଓଡ଼ିଶା ପୂଜ୍ୟ ପୂଜା ସଂସଦର ଦ୍ୱିତୀୟ ସଙ୍କଳନ 'ଗୋପବନ୍ଧୁ-ସ୍ମରଣିକା' ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସାହିତ୍ୟକୃତି ସମ୍ପର୍କରେ ନିକଟରେ ଛପାହେବାକୁ ଯାଉଛି । ଏହା ପୂଜ୍ୟପୂଜା ସଂସଦ ପରି ଏକ ବେସରକାରୀ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରେ ଏକ ସ୍ଥାୟୀ ଉଦ୍ୟମ । ଏ ଦେଶର ସଂସ୍କୃତି ଓ ସାହିତ୍ୟକୁ ପରିବ୍ୟାପ୍ତ କରିବାରେ ଏ ଅନୁଷ୍ଠାନର ଉଦ୍ୟମ ପ୍ରଶଂସନୀୟ । ପୁନଶ୍ଚ ବହୁ ଦୁଃସ୍ଥିତି ଓ ଦୁରବସ୍ଥା ଭିତରେ ଏହି ଅନୁଷ୍ଠାନ କେତେଜଣ ନିଷ୍ଠାପର ସଂସ୍କୃତିସେବୀ ବ୍ୟକ୍ତିଙ୍କ ଉଦ୍ୟମରେ ମୁଣ୍ଡଟେକି ପାରିଅଛି । ଏହି ଅନୁଷ୍ଠାନ ତରଫରୁ ଗୋପବନ୍ଧୁଙ୍କ ସ୍ମୃତିରେ ଏକ ପାଠାଗାର କଟକରେ ଗଢ଼ାଯାଇଛି । ପୁନଶ୍ଚ ତାଙ୍କ ସ୍ମୃତିକୁ ଆହୁରି ଉଜ୍ଜୀବିତ କରିବାପାଇଁ ଏହି ପୁସ୍ତକଟି ଯଥେଷ୍ଟ ଉପାଦାନ ଓ ତଥ୍ୟ ଯୋଗାଇବ-ଏ ଭରସା ମୋର ଅଛି । କଲେଜ ଛାତ୍ରମାନଙ୍କ ପାଇଁ ଗୋପବନ୍ଧୁ ସାହିତ୍ୟ ଏକ ପାଠ୍ୟକ୍ରମ ଭାବରେ ଉଚ୍ଚ ଶ୍ରେଣୀମାନଙ୍କରେ ଗ୍ରହଣ କରାଯାଇଛି । ଏ ପୁସ୍ତକର ଉଚ୍ଚ ସାହିତ୍ୟିକ ଆଙ୍ଗିକ ଓ ଆତ୍ମିକ ବିଭବ କଲେଜ ପାଠ୍ୟକ୍ରମରେ ସହଯୋଗୀ ହୋଇ ପାରିବ ।

ମୁଁ ଏହି ଅନୁଷ୍ଠାନର ଉଦ୍ୟମ ପାଇଁ ଆନ୍ତରିକ ପ୍ରଶଂସା କରିବା ସଂଗେ ସଂଗେ ଏହି ପୁସ୍ତକର ବ୍ୟାପକ ପ୍ରସାର କାମନା କରୁଛି ।

ବନମାଳୀ ପଟ୍ଟନାୟକ
ଶିକ୍ଷାମନ୍ତ୍ରୀ, ଓଡ଼ିଶା



ଭୁବନେଶ୍ୱର
ତା ୧ । ୧୨ । ୭୭

ଓଡ଼ିଶା ପୁଜ୍ୟ ପୂଜା ସଂସଦପକ୍ଷରୁ ଗୋପବନ୍ଧୁ ସରଣିକା ନାମକ ଏକ ପୁସ୍ତିକା ପ୍ରକାଶ ପାଉଛି ଶୁଣି ସୁଖୀ ହେଲି । ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ସମାଲୋଚକମାନେ ଜାତୀୟ ଯୁଗକୁ ସ୍ୱୀକୃତ ଦେଇ ନାହାନ୍ତି । ତା'ର କାରଣ ଅନେକ ଏବଂ ଆମ ସାହିତ୍ୟର ସମାଲୋଚନାର ସେ ଏକ ଦୁଃଖମୟ ଓ ଲଜ୍ଜାପ୍ରଦ ଅଧ୍ୟାୟ । ଏହି ପୁସ୍ତିକା ଯଦି ଓଡ଼ିଆ ସାହିତ୍ୟର ଜାତୀୟ ଯୁଗ ପ୍ରତି ଯଥାଯୋଗ୍ୟ ଧ୍ୟାନ ଦେଇପାରେ, ତାହାହେଲେ ଓଡ଼ିଆ ସାହିତ୍ୟର ଗୋଟିଏ ଅଭାବ ପୂର୍ଣ୍ଣ ହେବ ।

**ନିତ୍ୟାନନ୍ଦ ମହାପାତ୍ର**
ମନ୍ତ୍ରୀ, ଯୋଗାଣ ଓ ସାଂସ୍କୃତିକ ବ୍ୟାପାର ବିଭାଗ
ଓଡ଼ିଶା

# ବାର୍ତ୍ତା

ଓଡ଼ିଶାରେ ବୀରପୂଜାର ଅଭାବ । ଓଡ଼ିଶା ପୂଜ୍ୟପୂଜା ସମ୍ପଦ ଏ ବିଷୟରେ ଉଦ୍‌ଯୋଗ କରୁଥିବା ଆଶାର କଥା । ଏହି ଅନୁଷ୍ଠାନ ଗୋଟିଏ ଗୋପବନ୍ଧୁ ସ୍ମରଣିକା ପ୍ରକାଶ କରୁଛନ୍ତି । ସ୍ୱର୍ଗୀୟ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ନବ ଓଡ଼ିଶାର ଜଣେ ନିର୍ମାତା । ତାଙ୍କର ସେବା ଓ ବହୁମୁଖୀ ପ୍ରତିଭା ବିଷୟ ଉତ୍କଳର ଘରେ ଘରେ କାହାଣୀ ହୋଇଯାଇଛି । ଆଜି ସେହି ବରିଷ୍ଠ ପୁରୁଷଙ୍କ ପ୍ରତିଭା ପୂଜାର ଯେ ସାମାନ୍ୟ ଆୟୋଜନ ହେଉଛି ତାହା ଅତି ଆନନ୍ଦର କଥା ।

ଗୋପବନ୍ଧୁଙ୍କ ବିୟୋଗରେ ସ୍ୱର୍ଗୀୟ କବି ପଦ୍ମଚରଣ ପଟ୍ଟନାୟକ ଲେଖିଥିଲେ—

'ମଣିଷ ପରି ମଣିଷଟାଏ ପଡ଼ିଲା ଦେଖି ଖସିରେ
କିଏ ଭାବିବ ଦେଶର କଥା ନିଶ୍ଚିନ୍ତରେ ବସିରେ ।'

ଏତେ ଦିନ ଏହା ଭିତରେ ବିତିଯାଇଥିଲେ ମଧ୍ୟ ମଣିଷ ପରି ମଣିଷ ଜଣେ ତାଙ୍କ ସ୍ଥାନ ଏ ପର୍ଯ୍ୟନ୍ତ ପୂରଣ କରି ପାରିନାହିଁ । ଏହି କ୍ଷୁଦ୍ର ସ୍ମରଣିକା ଉତ୍କଳର ବର୍ତ୍ତମାନ ଓ ଭବିଷ୍ୟତ ପୁରୁଷଙ୍କୁ ଉଦ୍‌ବୁଦ୍ଧ କରୁ-ଏତିକି କାମନା ।

ଡକ୍ଟର ବଂଶୀଧର ସାମନ୍ତରାୟ
ଡି. ପି. ଆଇ., ଓଡ଼ିଶା
ତା ୨୮।୧୧।୬୭

# ବାରବାଟୀ ଲଟେରୀ

## ଗୋଟିଏ ଭଲରୁ ସହସ୍ର ଭଲ !!

ସତ୍ ତଥା ମହତ୍ ଉଦ୍ଦେଶ୍ୟ ରଖି ସଂସାରରେ ଯେତେ କାର୍ଯ୍ୟ ହୋଇଛି ସେଥିରୁ ଆହୁରି ଅସଂଖ୍ୟ ଭଲ ଫଳ ମିଳିଛି ।

ବାରବାଟୀ ରାଫଲ୍ କ୍ଷେତ୍ରରେ ମଧ୍ୟ ତାହାହିଁ ପ୍ରମାଣିତ ହୋଇଗଲା । ନବ ଉତ୍କଳର ଗୋଟିଏ ଅକ୍ଷୟ କୀର୍ତ୍ତି ପାଇଁ ଦେଶର ଗୁଣିଆଡ଼ୁ କେବଳ ଗୋଟିଏ ଲେଖାଁ ଟଙ୍କା ସଂଗ୍ରହ କରିବାର ପରିକଳ୍ପନା ସେଦିନ କରାହେଲା ।

ଆଜି ଦେଖାଯାଉଛି—

ବାରବାଟୀ ଷ୍ଟେଡ଼ିୟମ୍ ତିଆରି କାର୍ଯ୍ୟତଃ ଚାଲିଛି, ତାହା ସଙ୍ଗେ ସଙ୍ଗେ ସେହି ପାଣ୍ଠିରୁ—

| | | |
|---|---|---|
| ଜାତୀୟ ପ୍ରତିରକ୍ଷା ପାଣ୍ଠିକୁ | — | ଟ ୧,୮୬,୭୮୫.୦୦ |
| ପ୍ରଧାନ ମନ୍ତ୍ରୀଙ୍କ ପାଣ୍ଠିକୁ | — | ଟ ୫୦,୦୦୦.୦୦ |
| ନେହେରୁ ସ୍ମୃତିରକ୍ଷା ପାଣ୍ଠିକୁ | — | ଟ ୬୬,୫୦୦.୦୦ |
| ଓଡ଼ିଶାର ଦୁର୍ଭିକ୍ଷ ଅଞ୍ଚଳ ପାଇଁ | — | ଟ ୪୦,୦୦୦.୦୦ |
| ବିହାର ଦୁର୍ଭିକ୍ଷ ଅଞ୍ଚଳ ପାଇଁ | — | ଟ ୬୦,୦୦୦.୦୦ |
| ମଧ୍ୟ ପ୍ରଦେଶ ଦୁର୍ଭିକ୍ଷ ଅଞ୍ଚଳ ପାଇଁ | — | ଟ ୫,୦୦୦.୦୦ |

ଓ ଅନ୍ୟାନ୍ୟ ଅନେକ ପାଣ୍ଠିକୁ ମଧ୍ୟ ପ୍ରାୟ ଏକ ଲକ୍ଷ ( ଟ ୧,୦୦,୦୦୦ ଙ୍କା) ଦିଆଯାଇଛି ।

ଆପଣ ଆମକୁ ଟଙ୍କାଏ ଟଙ୍କାଏ ସାହାଯ୍ୟ ଦେଇ ଅନ୍ୟମାନଙ୍କୁ ସାହାଯ୍ୟ ଦେବାପାଇଁ ପଥ ପରିଷ୍କାର କରି ଦିଅନ୍ତୁ ବୋଲି ବିନୀତ ଅନୁରୋଧ—

**ପ୍ରଥମ ପୁରସ୍କାର ଟ୧,୦୦,୦୦୦ (ଏକ ଲକ୍ଷ ଟଙ୍କା)**

**ଏହାପରେ ଉଠାଣ—୧୦।୧୨।୬୭**

ବିଶେଷ ବିବରଣୀ ପାଇଁ ଲେଖନ୍ତୁ:—

ଅବୈତନିକ ସମ୍ପାଦକ

**ବାରବାଟୀ ରାଫଲ କମିଟି, କଟକ-୫**

# ଶିକ୍ଷକ ଦର୍ପଣ—

ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ମାସିକ ମୁଖପତ୍ର । ଏଥିରେ ଶିକ୍ଷା ସଂକ୍ରାନ୍ତ ପ୍ରବନ୍ଧ, ଶିକ୍ଷକର ଦୈନ୍ୟ ଓ ଦୁର୍ଦ୍ଦଶା ସମ୍ବଳିତ କ୍ଷୁଦ୍ର ଗଳ୍ପ, ଏକାଙ୍କିକା, ଅଭାବ ଅଭିଯୋଗ ସମ୍ବନ୍ଧୀୟ ପତ୍ର, ସଂଘର କାର୍ଯ୍ୟକଳାପ ପ୍ରକାଶ ପାଏ । ପତ୍ରିକାର 'ଶୃଣ୍ୱନ୍ତୁ ସର୍ବେ' ଓ 'ଶିକ୍ଷାଶ୍ରମେ ଶଇତାନ' ଶୀର୍ଷକ ବିଷୟରେ ସରକାର ତଥା ପରିଚାଳନା ସମିତିଗୁଡ଼ିକର ଶିକ୍ଷକମାନଙ୍କ ପ୍ରତି ଅତ୍ୟାଚାର ସମ୍ବନ୍ଧରେ ଯେଉଁ ସମ୍ବାଦ ପ୍ରକାଶିତ ହୁଏ; ତାହା ଗୁରୁତ୍ୱପୂର୍ଣ୍ଣ ।

ବାର୍ଷିକ ମୂଲ୍ୟ ଟ ୨-୦୦ ।

ଶ୍ରୀ ବନମାଳୀ ବ୍ରହ୍ମଚାରୀ, ସମ୍ପାଦକ

ଝାଞ୍ଜିରୀମଙ୍ଗଳା, କଟକ—୧ ଠିକଣାରେ ପତ୍ରିକାର ମୂଲ୍ୟ ପଠାଇବାକୁ ହେବ ।

# ନିମ୍ନ ମାଧ୍ୟମିକ ଟେଷ୍ଟ ପେପର

ବହୁଦର୍ଶୀ ଶିକ୍ଷକମାନଙ୍କ ସହାୟତାରେ ପ୍ରଣୟନ କରାଯାଇଛି । ଚଳିତ ବର୍ଷ ଏହି ବହିର ଆକାର ଓ ମୂଲ୍ୟ ପୂର୍ବାପେକ୍ଷା ବୃଦ୍ଧି କରାଯାଉଛି । ମୁଦ୍ରଣ କାର୍ଯ୍ୟ ସମାପ୍ତ ହେବା ପରେ ବହିର ପୃଷ୍ଠା ସଂଖ୍ୟା ଓ ମୂଲ୍ୟ ଜଣାଇ ଦିଆଯିବ ।

—ପ୍ରାପ୍ତିସ୍ଥାନ—

ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ

ଝାଞ୍ଜିରୀମଙ୍ଗଳା, କଟକ-୧

# କଟକ ମିଳିତ କେନ୍ଦ୍ର ସମବାୟ ବ୍ୟାଙ୍କ ଲିମିଟେଡ଼

## ମୁଖ୍ୟ କାର୍ଯ୍ୟାଳୟ—ନିମଚୌଡ଼ି, କଟକ-୨

ଏହି ବ୍ୟାଙ୍କରେ ଟଙ୍କା ରଖିଲେ—

୧ । କୃଷି ଓ କ୍ଷୁଦ୍ର ଶିଳ୍ପର ଉତ୍ପାଦନ ବଢ଼ାଇବାରେ ସାହାଯ୍ୟ କରିବ ।

୨ । ଖାଦ୍ୟସଙ୍କଟ ଦୂର କରିବ; ଦେଶରକ୍ଷାରେ ସହାୟକ ହେବ ।

୩ । ଶୋଷଣ କବଳରୁ ମୁକ୍ତଦେଇ ଶ୍ରେଣୀ ଗଠନ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିବ ।

୪ । ଟଙ୍କା ସମ୍ପୂର୍ଣ୍ଣ ନିରାପଦରେ ରହିବ ।

ଯେହେତୁ

| | |
|---|---|
| ଏହାର ମୂଳଧନ | ୨ କୋଟି ୧୦ ଲକ୍ଷ ୪୦ ହଜାର ଟଙ୍କା |
| ଜମା ଟଙ୍କାର ପରିମାଣ | ୭୯ ଲକ୍ଷ |
| ବାର୍ଷିକ ଲାଭର ପରିମାଣ | ୧ ଲକ୍ଷରୁ ଅଧିକ |
| ନିଜ ପାଣ୍ଠି | ୩୫ ଲକ୍ଷ |

ରିଜର୍ଭବ୍ୟାଙ୍କ ଓ ରାଜ୍ୟସରକାରଙ୍କଦ୍ୱାରା ସମୀକ୍ଷିତ, ଶୃଙ୍ଖଳିତ ଓ ଅନୁମୋଦିତ ।

ବିଶେଷ ଆକର୍ଷଣ—

ସୁଧ ଦେବାପାଇଁ ସଞ୍ଚୟ ଜମାର ପରିମାଣର କୌଣସି ସୀମାରେଖା ନାହିଁ ।
ମାତ୍ର ପଚିଶ ଟଙ୍କାରେ ଚଳନ୍ତି ଅମାନତ ଖୋଲାଯାଇ ପାରିବ ।
ଅନ୍ୟାନ୍ୟ ବ୍ୟାଙ୍କ ଅପେକ୍ଷା ସର୍ବୋଚ୍ଚ ସୁଧର ହାର ।

ସ୍ଥାୟୀ ଅମାନତ—

| | |
|---|---|
| ୬୧ ଦିନଠାରୁ ୯୦ ଦିନ ପର୍ଯ୍ୟନ୍ତ | ଶତକଡ଼ା ବାର୍ଷିକ ୪ ହାର ସୁଧ |
| ୯୧ ,, ୧୮୦ ,, | , ୫ ,, |
| ୧୮୧ ,, ୩୬୦ ,, | ,, ୫½ ,, |
| ୧ ବର୍ଷରୁ ଅଧିକ ଓ ୨ ବର୍ଷରୁ କମ | ,, ୬ ,, |
| ୨ ,, ୩ ,, | ,, ୬½ ,, |
| ୩ ,, ୫ ,, | ,, ୬¾ ,, |
| ୫ ବର୍ଷରୁ ଅଧିକ | ,, ୭ ,, |

ସଞ୍ଚୟ ଅମାନତ—ଶତକଡ଼ା ୪ ହାର ସୁଧରେ । ଚଳନ୍ତି ଅମାନତ—ଶତକଡ଼ା ½ ହାରସୁଧରେ, ବିଶେଷ ବିବରଣୀପାଇଁ କଟକ ବ୍ୟାଙ୍କ ସେକ୍ରେଟେରୀ ଓ କେନ୍ଦ୍ରାପଡ଼ା ଯାଜପୁର, ଆଠଗଡ଼, କୁଜଙ୍ଗ, ଜଗତସିଂହପୁରରେ ଥିବା ବ୍ରାଞ୍ଚ ମ୍ୟାନେଜରମାନଙ୍କ ସହିତ ଯୋଗାଯୋଗ ରକ୍ଷା କରନ୍ତୁ ।

**ଆଜିର ଏହି ପବିତ୍ର ଗୋପବନ୍ଧୁ ସ୍ମୃତି ଉତ୍ସବରେ ଆମେ ଆମର ଅଗଣିତ ସମବାୟପ୍ରେମୀ ଓ ଦେଶବାସୀଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛୁ ।**

ଶୈଳେନ୍ଦ୍ରକୁମାର ରାୟ
ସଭାପତି

ଗଙ୍ଗାଧର ମିଶ୍ର
ସମ୍ପାଦକ

# ସଂସଦ-ସ୍ମରଣିକା ସମ୍ପର୍କରେ ପଦେ

‘‘ _ ତିବଧ୍ନାତି ହି ଶ୍ରେୟଃ ପୂଜ୍ୟପୂଜାବ୍ୟତିକ୍ରମଃ’’

ପୂଜ୍ୟପୂଜାର ବ୍ୟତିକ୍ରମ ହେଲେ ଦେଶ ବା ଜାତିର ଅକଲ୍ୟାଣ ହୁଏ । ଉତ୍କଳ ପ୍ରତିଭାର ଯଥାଯୋଗ୍ୟ ପୂଜା କରି ପାରି ନାହିଁ । କେତେ ବନମଲ୍ଲୀ ବନରେ ଫୁଟି ଝଡ଼ି ଯାଇଛନ୍ତି । ଏ ପ୍ରଦେଶରେ ପ୍ରତିଭା ଜାତ ହୋଇଛି; କିନ୍ତୁ ଅନୁକୂଳ ବାତାବରଣ ଅଭାବରୁ ତାହା ଉଧେଇ ପାରିନାହିଁ । ପ୍ରତିଭାକୁ ଉପଯୁକ୍ତ ସମ୍ମାନ ଦେବାଲାଗି କେତେକ ତରୁଣଙ୍କ ଉଦ୍ୟମରେ ପୂଜ୍ୟ-ପୂଜାସଂସଦର ଜନ୍ମ ହୋଇ ଥିଲା । ବିଶିଷ୍ଟ ନେତା ଓ କବିମାନଙ୍କ ଜନ୍ମଭୂମିରେ ଆଡ଼ମ୍ବରସହକାରେ ସେମାନଙ୍କ ଜନ୍ମଦିବସ ପାଳନ କରାହୋଇଛି, ‘ସ୍ମରଣିକା’ ପ୍ରକାଶିତ ହୋଇଛି । ଜନସାଧାରଣଙ୍କ ମଧ୍ୟରେ ପ୍ରତିମା ବଦଳରେ ପ୍ରତିଭା ପୂଜା ପ୍ରତି ଆଗ୍ରହ ଜନ୍ମାଇବା ଏଇସବୁ ଉତ୍ସବର ଉଦ୍ଦେଶ୍ୟ ଥିଲା । ଦେଶାତ୍ମ-ବୋଧରେ ଉଦ୍‌ବୁଦ୍ଧ, ଉତ୍କଳୀୟ ସାଂସ୍କୃତିକ ଜାଗରଣରେ ଦୃଢ଼ ବିଶ୍ୱାସୀ ଉତ୍ସାହୀ ତରୁଣମାନେ କୁଳବୃଦ୍ଧ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ବ୍ୟାସକବି ଫକୀରମୋହନଙ୍କ ପୂଜାଲାଗି ସେମାନଙ୍କ ଜନ୍ମସ୍ଥାନକୁ ବହୁ-ବାର ଯାତ୍ରା କରିଛନ୍ତି; କଟକରେ ମଧ୍ୟ ସେମାନଙ୍କ ଜନ୍ମଦିବସ ସଂସଦ ତରଫରୁ ପାଳିତ ହୋଇଛି । ଝାଞ୍ଜିରିମଙ୍ଗଳାରେ ଗୋପବନ୍ଧୁ ପାଠାଗାର ପ୍ରତିଷ୍ଠିତ ହୋଇଛି । ଓଡ଼ିଶା ମ୍ୟୁଜିୟମରେ ବିଶିଷ୍ଟ ବ୍ୟକ୍ତିମାନଙ୍କର ବ୍ୟବହାର୍ଯ୍ୟ ଦ୍ରବ୍ୟ ଓ ପାଣ୍ଡୁଲେଖ୍ୟ ସଂଗ୍ରହ କରି ରଖିବା ଓ ସଂସଦ-ଜରିଆରେ ଓଡ଼ିଶାରେ ସାଂସ୍କୃତିକ ଜାଗରଣ ଆଣିବା ହୁଏ ତ ନାନା କାରଣରୁ ସମ୍ଭବ ହୋଇ ପାରିନାହିଁ; କିନ୍ତୁ ପୂଜ୍ୟ-ପୂଜା-ସଂସଦ ଯେ ଏ ଦିଗରେ ଏକ ପଦକ୍ଷେପ, ଏହା କେହି ଅସ୍ୱୀକାର କରି ପାରିବେ ନାହିଁ ।

‘ଗୋପବନ୍ଧୁ ସ୍ମରଣିକା’ ପ୍ରକାଶନଲାଗି କିଛି ସରକାରୀ ସାହାଯ୍ୟ ଗତ ବର୍ଷ ମିଳିଥିଲା; କିନ୍ତୁ ‘ମଧୁ ସ୍ମରଣିକା’ ପ୍ରକାଶନ ବାଗରେ ସେ ସାହାଯ୍ୟର କେତେକାଂଶ ନିୟୋଜିତ ହୋଇଥିଲା । ଏବେ ଏହି ସ୍ମରଣିକା ମୁଦ୍ରଣବ୍ୟୟଭାର କେତେକାଂଶରେ ଡକ୍ଟର ମହତାବ ମଧ୍ୟ ବହନ କରିଛନ୍ତି । ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନେ ପ୍ରବନ୍ଧ ଓ ବାର୍ତ୍ତା ପଠାଇଛନ୍ତି । ‘ସମାଜ’ର ଶ୍ରାଦ୍ଧସଂଖ୍ୟାରେ ପ୍ରକାଶିତ କେତେକ ଉପାଦେୟ ପ୍ରବନ୍ଧ-ସଂପୃକ୍ତ ଲେଖକଙ୍କ ଅଙ୍ଗୀକାରକ୍ରମେ ଏଥିରେ ସ୍ଥାନ ପାଇଛି ।

ଏଥିଲାଗି ସଂସଦ ସେମାନଙ୍କ ପ୍ରତି ଆନ୍ତରିକ କୃତଜ୍ଞତା ପ୍ରକାଶ କରୁଅଛି । ଏହି ସଂସଦପକ୍ଷରୁ ଆସନ୍ତା ବର୍ଷ ‘ନୀଳକଣ୍ଠସ୍ମରଣିକା’ ପ୍ରକାଶ ପାଇବାର ପରିକଳ୍ପନା ରହିଅଛି । ଏଥିପାଇଁ ସମସ୍ତଙ୍କ ସାହାଯ୍ୟ ସଂସଦ ଲୋଡ଼ୁଅଛି ।

ଡକ୍ଟର କୁଞ୍ଜବିହାରୀ ଦାଶ

ସଭାପତି, ପୂଜ୍ୟ-ପୂଜା-ସଂସଦ, ଓଡ଼ିଶା

# ପୁଣ୍ୟାତ୍ମା ଗୋପବନ୍ଧୁ

## ଡକ୍‌ଟର ହରେକୃଷ୍ଣ ମହତାବ୍‌

ଗୋପବନ୍ଧୁଙ୍କ ମୃତ୍ୟୁର ଅବ୍ୟବହିତ ପରେ ଆମ୍ଭେମାନେ ଯେଉଁମାନେ ସେତେବେଳେ ବାଲେଶ୍ୱର ସ୍ୱରାଜମନ୍ଦିରରେ ଘରଦ୍ୱାର ଛାଡ଼ି ଦେଶର କାମ କରୁଥିଲୁଁ, ମନେକଲୁଁ ଯେ ଗୋପବନ୍ଧୁଙ୍କ ଜୀବନୀକୁ ପୁର-ପଲ୍ଲୀରେ ପ୍ରଚାରକରି ତାଙ୍କର ଆଦର୍ଶକୁ ବଡ଼ଆକାରରେ ଲୋକଙ୍କ ଆଗରେ ଧରି ରଖିବୁଁ । ସେହି ଉଦ୍ଦେଶ୍ୟରେ ସେତେବେଳେ 'ପୁଣ୍ୟାତ୍ମା ଗୋପ-ବନ୍ଧୁ' ନାମରେ ଏକ ଗାଉଁଲି କବିତା ପୁସ୍ତିକା ମୁଁ ରଚନାକରି ପ୍ରକାଶ କରିଥିଲି । ତାହା ପ୍ରଜାତନ୍ତ୍ର ପ୍ରେସରୁ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ସେ ବହିଖଣ୍ଡି ସେତେବେଳେ ଖୁବ ଭଲ ବିକ୍ରି ହୋଇଥିଲା । ତା'ପରେ ପରେ ମାଡ଼ିଆସିଲା ଲବଣସତ୍ୟାଗ୍ରହ ଓ ଅନ୍ୟାନ୍ୟ ଆନ୍ଦୋଳନମାନ । ସେଥିରେ କର୍ମପ୍ରେରଣା ଏପରି ପ୍ରଖର ଓ ବିଭିନ୍ନ ଗତିର ହେଲା ଯେ ନିଜଠାରେ ଓ ଲୋକଙ୍କଠାରେ ନିର୍ଦ୍ଦିଷ୍ଟଭାବରେ ଏକ ଆଦର୍ଶକୁ ବଡ଼ ଦେଉଳର ପତାକା ପରି ଟେକିରଖି ହେଲା ନାହିଁ । ଆଜ ଯାହା ଦେଶ ଭୋଗୁଛି ତାହାର ମୂଳ ରହିଲା ସେଇଠି ଯେଉଁଠି କର୍ମମୟ ଜୀବନମଧ୍ୟରେ ଆଦର୍ଶର ଭୂମିକା ଗୌଣ ହୋଇଗଲା । ସେଥିପାଇଁ ଆଜ ଅନ୍ୟମାନଙ୍କର ବିରକ୍ତି ଓ ଅସନ୍ତୋଷ ବା ଏପରିକି ବିକ୍ଷୋଭକୁ ମଧ୍ୟ ସହ୍ୟ କରି ନିଜର ବିବେକ ଅନୁସାରେ ଯାହା ଠିକ ବା ଭୁଲ ବୋଲି ଜଣା ଯାଉଛି ତାକୁ ପ୍ରକାଶ କରିବାକୁ ହେଉଛି । ଗୋପବନ୍ଧୁଙ୍କ ଜୀବନର ମହତ୍ତ୍ୱ କେଉଁଠି ତାହା ଯେଉଁମାନେ ତାଙ୍କ ସହିତ ଚଳିଥିଲେ, ସେହିମାନେ ଜାଣିଥିଲେ; ଓ ସେହିମାନେ ଯେବେ ଓ ଯଦି ତାଙ୍କର ଅନୁଭୂତିକୁ ଲିପିବଦ୍ଧ କରନ୍ତି ତେବେ ଅନ୍ୟମାନେ ସେଥିରୁ କିଛି ଅନୁଭବ କରିପାରିବେ । ସେ ଅସାଧାରଣଭାବରେ ମେଧାବୀ ନ ଥିଲେ । ଯେଉଁ ଓକିଲାତି ବ୍ୟବସାୟକୁ ଜୀବିକାଭାବରେ ଗ୍ରହଣ କରିଥିଲେ ସେଥିରେ ସେ ପ୍ରଥମଶ୍ରେଣୀକୁ ଯାଇ ନ ଥିଲେ । ସେ ଧନୀ ନ ଥିଲେ । ତାଙ୍କ ସମୟର ଯେଉଁମାନେ ସମ-ସାମୟିକ ସାଧାରଣଜନସେବୀ ଥିଲେ ସେମାନେ ସମସ୍ତେ ଉପର୍ଯ୍ୟୁକ୍ତ ଗୁଣ-ମାନଙ୍କରେ ତାଙ୍କଠାରୁ ବଡ଼ ଥିଲେ । ମଧୁସୂଦନ ଦାସ, ବ୍ରଜସୁନ୍ଦର ଦାସ, ପାରଳାଖେମୁଣ୍ଡି ଓ ଖଲ୍ଲିକୋଟରାଜାମାନେ, ସୁଦାମଚରଣ ନାୟକ ଏମାନେ ସମସ୍ତେ ସାଂସାରିକ ଦୃଷ୍ଟିକୋଣରୁ ଗୋପବନ୍ଧୁଙ୍କଠାରୁ ଉଚ୍ଚ

ଶ୍ରେଣୀର ଥିଲେ । ଏମାନଙ୍କ ଭିତରେ ଗୋଟିଏ ମାତ୍ର ଗୁଣ ସାଧାରଣ ଥିଲା ଯାହା ହେଉଛି ବାଗ୍ମିତା । ସେତେବେଳେ ବକ୍ତୃତା ଦେବାର ଶକ୍ତି ରାଜନୈତିକ ନେତୃତ୍ୱର ଏକ ବଡ଼ ପ୍ରମାଣ ଥିଲା । ଆଜ ଯେ ଗୋପବନ୍ଧୁ ଚିରସ୍ମରଣୀୟ ହୋଇ ଆଜିସୁଦ୍ଧା ଜଣା ଅଜଣା ଅସଂଖ୍ୟ ଲୋକଙ୍କ ହୃଦୟରେ ଏକ ସ୍ପନ୍ଦନ ଆଣି ପାରୁଛନ୍ତି ସେଥିପାଇଁ ତାଙ୍କର କି ବିଶେଷତ୍ୱ ଥିଲା ? ସଙ୍ଗଠନ ଶକ୍ତି ? ସେ ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠା କରିଥିଲେ । ପୁରୀରେ ଅନେକ ଧାର୍ମିକ ଅନୁଷ୍ଠାନ ସ୍ଥାପନ କରିଥିଲେ । ସର୍ବୋପରି 'ସମାଜ' ପତ୍ରିକାର ସଂଗଠନ କରିଥିଲେ । ଏଇଥିରେ କଅଣ ତାଙ୍କର ବିଶେଷତ୍ୱ ? ତାହା ବୋଧହୁଏ ନୁହେଁ ; କାରଣ ଗୋପବନ୍ଧୁଙ୍କର ସଂଗଠନ ଶକ୍ତି ଯେପରି ଥିଲା ସେହିପରି ବା ତା'ଠାରୁ ବେଶି ତାଙ୍କର ସାମୟିକ ନେତୃମଣ୍ଡଳୀର ମଧ୍ୟ ଥିଲା । ବଡ଼ଲୋକଙ୍କ ଭିତରେ ତୁଳନା କରିବା ଅନ୍ୟାୟ । ଯେ ଜୀବନରେ ବଡ଼ ହୋଇଛନ୍ତି ତାଙ୍କର କିଛି ହେଲେ ବିଶେଷତ୍ୱ ଅଛି । ଗୋପବନ୍ଧୁଙ୍କର ବିଶେଷତ୍ୱ ହେଉଛି ଏହି ଯେ ସେ ନିଜେ ନିଜକୁ ସମାଜର ସବୁଠାରେ ଯେ ତଳେ ପଡ଼ିଛି ତାହା ସହିତ ମିଳେଇ ଦେଇଥିଲେ । କେହି ଆଜ କଳ୍ପନା କରି ପାରିବେ ଯେ ସେ ବେଙ୍କଷଇପାଇଁ ହାଲଦବାଟି ଆସି ହାଲଦିଆ ହାତ ରଁ ସି. ଏଫ. ଏଣ୍ଡ୍ରୁଜଙ୍କ ପରି ବ୍ୟକ୍ତିମାନଙ୍କ ସହ ବନ୍ୟା-ସାହାଯ୍ୟ ବିଷୟ ନିଃସଙ୍କୋଚ-ଭାବରେ ଆଲୋଚନା କରି ପାରୁଥିଲେ ? କେହି ଆଜ କଳ୍ପନା କରି-ପାରିବେ ଯେ ସେ ଓଡ଼ିଶାରେ ଜଣେ ବଡ଼ ନେତା ହୋଇ ମଧ୍ୟ କଲିକତାରେ ରୁକର ବେବେହେବ ଏହିମାନଙ୍କ ଅତିଥି ହୋଇ ରହୁଥିଲେ; କେବଳ ସଭାସମିତିରେ ବା କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟରେ ସେ ଧନୀମାନଙ୍କ ସଂସ୍ପର୍ଶରେ ଆସୁଥିଲେ, ଅନ୍ୟଥା ସେ ସବୁବେଳେ ମଜଲୁମୁଣ୍ଡିଆଙ୍କ ଭିତରେ ହିଁ ରହୁଥିଲେ । ଏହା ଥିଲା ତାଙ୍କର ହୃଦୟର ଶକ୍ତି । ତାଙ୍କର ବିଶେଷତ୍ୱ ଥିଲା ତାଙ୍କର ହୃଦୟ । ତାଙ୍କ କଲମରୁ ଯେଉଁ ସମୟରେ ଯେ କୌଣସି ଲେଖା ବାହାରୁଥିଲା, ତାହା କବିତା ହେଉ, ପ୍ରବନ୍ଧ ହେଉ ବା ସମ୍ବାଦପତ୍ରର ସମ୍ପାଦକୀୟ ହେଉ, ସବୁଥିରେ ହୃଦୟ ଅଜାଡ଼ିହୋଇ ପଡ଼ୁଥିଲା । ତାଙ୍କର ବକ୍ତୃତା ଓ ସ୍ୱରରେ ମଧ୍ୟ ତାଙ୍କର ହୃଦୟ ହିଁ ବେଶି ପ୍ରକାଶ ପାଉଥିଲା । ଏହାହିଁ ଥିଲା ମହାତ୍ମାଗାନ୍ଧିଙ୍କର ଅନେକ ବିଶେଷତ୍ୱ ମଧ୍ୟରୁ ଗୋଟିଏ । ଏହାହିଁ ସହାୟକ ହୋଇଥିଲା ଜନତାର ହୃଦୟରେ ଆଶାର ସଞ୍ଚାରଣପାଇଁ । ଏଥିପାଇଁ ଯେତେବେଳେ ସେ ଦୁଇ ବର୍ଷ ଜେଲଦଣ୍ଡ ଭୋଗିବାକୁ ଗଲେ ସେତେବେଳେ ବାଞ୍ଛାନିଧି ବାବୁଙ୍କର ଏକ

ସଙ୍ଗୀତ ପୁରପଲ୍ଲୀରେ ଝଙ୍କାର ଉଠିଲା ।

"ଆହେ ଗୋପବନ୍ଧୁ, ଉତ୍କଳର ବନ୍ଧୁ, ଉତ୍କଳକୁ ଛାଡ଼ି ଗଲ କାହିଁ ?"

ଆଜି ସେହି ସଙ୍ଗୀତ ସେହି ମୂର୍ଚ୍ଛନାରେ ହୃଦୟତନ୍ତ୍ରୀରେ ବାଜି ଚକ୍ଷୁ ଲୋତକପୂର୍ଣ୍ଣ କରିଦେଉଛି ।

ଆଜି ହଜାର ହଜାର କୋଟି ସଂଖ୍ୟାରେ ଟଙ୍କା ହିସାବକରି ଯୋଜନାମାନ ଚାଲିଛି । ଜାତୀୟ ଆନ୍ତର୍ଜାତିକ କ୍ଷେତ୍ରରେ ହିମାଳୟ ଶୃଙ୍ଗକୁ ସ୍ପର୍ଶ କରିବାଭଳି ଉଚ୍ଚ ବ୍ୟାଖ୍ୟାନ ଓ ବକ୍ତୃତାମାନ ପ୍ରକାଶ ପାଉଛି । କିନ୍ତୁ ? କିନ୍ତୁ ଜନତାମନରେ ଯେ ଜାତ୍ୟଭିମାନ, ସ୍ୱାଭିମାନ କ୍ରମେ ହ୍ରାସ ପାଉଛି ଯାହା ଫଳରେ ଉଲଗ୍ନ ଅନାଚାର ସମାଜରେ ପ୍ରକାଶ ପାଇଛି, ତା'ର ପ୍ରତିଶୋଧକ ଲମ୍ବାଚୌଡ଼ା ବକ୍ତୃତା ନୁହେଁ କି ସୁନ୍ଦର ସାଧୁ-ଭାଷାରେ ଜୀବନ ହୀନଭାବରେ ଲିଖିତ ଉନ୍ନତ ମସ୍ତିଷ୍କର ସୃଷ୍ଟ ଚିନ୍ତା ନୁହେଁ । ସମାଜକୁ ତୋଳି ରଖେ ସମାଜର ଆଦର୍ଶ । ସମାଜର ଆଦର୍ଶ ପ୍ରଭାବିତ ହୁଏ ସେହିମାନଙ୍କଦ୍ୱାରା ଯେଉଁମାନେ ସମାଜ-ଭିତରେ ଭଲରେ ମନ୍ଦରେ ଅଛନ୍ତି । ଗୁଡ଼ାଏ ଲୋକ ନିଜକୁ ସମାଜଠାରୁ ଅଲଗାକରି ସମାଜର ଉନ୍ନତି ସାଧନା କରିବାପାଇଁ ଯେଉଁ ବାହ୍ୟାଡ଼ମ୍ବର ଜାରି କରୁଛନ୍ତି, ସେମାନଙ୍କୁ ସମାଜ ସହୁଛି ସତ, ମାତ୍ର ଅଳ୍ପକାଳପାଇଁ ଯେଉଁ ଜୀବନୀଶକ୍ତି ଗାନ୍ଧି, ଗୋପବନ୍ଧୁ ସମାଜରେ ଛାଡ଼ି ଦେଇଛନ୍ତି ସେ ପୁଣି ଅନୁକୂଳ ପାଗ ପାଇ ଅଙ୍କୁରିତ ଓ ଦ୍ରୁମାୟିତ ହେବ ଏହାର ସୂଚନା ପ୍ରକାଶ ପାଇଲାଣି । ଏହି ସୂଚନା ପ୍ରତି ଯୁବସମାଜର ଦୃଷ୍ଟି ଆକର୍ଷଣ କରିବାକୁ ମୁଁ ଚେଷ୍ଟା କରୁଛି ।

ଗୋପବନ୍ଧୁଙ୍କ ମୃତ୍ୟୁ ନେତ୍ରୋତ୍ସବଦିନ । ରଥଯାତ୍ରାକୁ ସେ ରହିପାରିଲେ ନାହିଁ । ଆଜି ରଥଯାତ୍ରାରେ ମାତି ଯେଉଁମାନେ ନେତ୍ରୋତ୍ସବଟିକୁ ଭୁଲି ଯାଉଛନ୍ତି ସେମାନେ ମନେ ରଖିବା ଉଚିତ ଯେ ଆଗେ ନେତ୍ର ନ ଚଢ଼ି ଥିଲେ ରଥକୁ ଠାକୁର ବିଜେ ହୋଇ ନଥାନ୍ତେ । ଆଗେ ଆଦର୍ଶ, ତା'ପରେ ଯାତ୍ରା । ନଚେତ୍ ରଥରୁ ଠାକୁର ଗଡ଼ିପଡ଼ନ୍ତି ବା ରଥର ଚକଭାଙ୍ଗି ବାଟରେ ପଡ଼ିରହି, ଏହିପରି ଦୁର୍ବିପାକ ସମାଜରେ ଘଟିବାର ଆଶଙ୍କା । ଏଣୁ ଯୋଜନାର ରଥଯାତ୍ରାମଧ୍ୟରେ ଯେଉଁମାନେ ନେତ୍ରୋତ୍ସବ ପରି ଏକ ଆଦର୍ଶର ପତାକା ତୋଳିଥିଲେ ସେମାନଙ୍କ ପ୍ରତି ଅନ୍ତର୍ଦୃଷ୍ଟି ରଖି ସବୁକାର୍ଯ୍ୟ ହେଉ । ଗୋପବନ୍ଧୁଙ୍କ ଆଶୀର୍ବାଦ ଆମ୍ଭମାନଙ୍କଠି ରହିଥାଉ ।

———

# ଗୋପବନ୍ଧୁ ମାନସ

## ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଦେଶବନ୍ଧୁ ଗୋପବନ୍ଧୁଙ୍କ ତିରୋଧାନ ଆଜକୁ ଅର୍ଦ୍ଧଶତ ବର୍ଷ ହୋଇଗଲାଣି । ଇତି ମଧ୍ୟରେ ଓଡ଼ିଶାର ସମାଜ, ସଂସ୍କୃତି; ସାହିତ୍ୟ ଓ ରାଜନୀତି କ୍ଷେତ୍ରରେ ବହୁ ପରିବର୍ତ୍ତନ ହୋଇ ଯାଇଛି । ତଥାପି ଗୋପବନ୍ଧୁ ଯେ ଏ ଜାତିର ଅନ୍ତରକୁ କେତେ ନିବିଡ଼ ଭାବରେ ସ୍ପର୍ଶ କରିଥିଲେ, ତାହାର ପରିଚୟ ଆମେ ପ୍ରତ୍ୟେକ ବର୍ଷ ନଆ ନଆ ଭାବେ ଲଭ କରୁଅଛୁ । ବହୁ କବି ତାହାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ନିବେଦନ କରି ଗଲେଣି । ବହୁ ଆଲୋଚକ ତାଙ୍କର ଜୀବନ ଓ ସାହିତ୍ୟକୁ ନାନା ଭାବରେ ବିଶ୍ଳେଷଣ କରି ଯାଇ ଅଛନ୍ତି । ତଥାପି ଗୋପବନ୍ଧୁଙ୍କୁ ଜାଣିବାର ସମାପ୍ତି ଘଟିନାହିଁ । ହୁଏତ କେବେହେଲେ ଘଟିବ ନାହିଁ ।

ଗୋପବନ୍ଧୁ ଏ ଜାତିର ଚିରନମସ୍ୟ । ବଳିଷ୍ଠ ଅନୁଷ୍ଠାନ—ଏକ ଚିରପ୍ରବହମାନ ପବିତ୍ର ଜଳଧାରା । ଆମେ ସେଇ ପୂତ ଜଳଧାରାର କିୟଦଂଶ ମାତ୍ର ସାମୟିକ ସ୍ପର୍ଶ କରି ଧନ୍ୟ ଓ ପବିତ୍ରିତ ହେଉ ।

ଗୋପବନ୍ଧୁଙ୍କ ବହୁମୁଖୀ ଜୀବନକୁ ନାନା ଭାବରେ ବିଚାର କରା-ଯାଇପାରେ । ଜନସେବାବ୍ରତୀ, ଶିକ୍ଷାବ୍ରତୀ, ରାଜନୈତିକ କର୍ମୀ, ନେତା, କବି, ସମ୍ପାଦକ, ବାଗ୍ମୀ, ତ୍ୟାଗୀ, ବ୍ୟବସ୍ଥାପକ, ଆଇନଜୀବୀ, ସଂଗଠକ, ସମାଜ ସଂସ୍କାରକ, ବନ୍ଧୁବତ୍ସଳ ତଥା ମହାନୁଭବ ବ୍ୟକ୍ତି ଭାବରେ ଗୋପବନ୍ଧୁଙ୍କ ଜୀବନ ଏ ଜାତିର ଇତିହାସରେ ଏକ ଗୌରବମୟ ଅଧ୍ୟାୟ ।

ପ୍ରକୃତ ନେତୃତ୍ୱ ବହୁମୁଖୀ ପ୍ରତିଭାସାପେକ୍ଷ । ଦେଶର ସର୍ବବିଧ ସମସ୍ୟା ସମାଧାନରେ, ସର୍ବାଙ୍ଗୀନ ଉନ୍ନତି ସାଧନରେ ତାହା ବିନିଯୁକ୍ତ । ମହାତ୍ମା ଗାନ୍ଧି ଏ ଦେଶର ପାରିବାରିକ ସମସ୍ୟାଠାରୁ ଆରମ୍ଭ କରି

ସାମାଜିକ, ଧାର୍ମିକ, ସାଂସ୍କୃତିକ ତଥା ଆନ୍ତର୍ଜାତିକ ସମସ୍ୟା ପର୍ଯ୍ୟନ୍ତ ସବୁ ବିଷୟରେ ଗଭୀର ଚିନ୍ତାକରି ଆପଣାର ମୌଳିକ ଅଭିମତ ପ୍ରକାଶ କରି ଯାଇଅଛନ୍ତି । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱରେ ଆମେ ଠିକ୍ ତାହା ହିଁ ଲକ୍ଷ୍ୟ କରୁ ।

ଏ ଦେଶର ଯଥାର୍ଥ ନେତା ଭାବେ ଗୋପବନ୍ଧୁ ଓଡ଼ିଶାର ସମାଜ, ସାହିତ୍ୟ, ସଂସ୍କୃତି, ଧର୍ମନୀତି ତଥା ରାଜନୀତି ଭଳି ପ୍ରତ୍ୟେକ ବିଷୟରେ ପ୍ରଭୂତ ଚିନ୍ତା କରି ପ୍ରତ୍ୟେକ ବିଷୟରେ ଏ ଦେଶକୁ ଆପଣାର ସୁଚିନ୍ତିତ ପରାମର୍ଶ ଦେଇ ଯାଇଅଛନ୍ତି । ତାହାଙ୍କ ଅମୂଲ୍ୟ ରଚନାବଳୀ ଇତସ୍ତତଃ ବିକ୍ଷିପ୍ତ ହୋଇ ରହିଛି । ଏ ଯାବତ୍ ସେସବୁ ସଂଗୃହୀତ ବା ସଂକଳିତ ହୋଇନାହିଁ । ସେଗୁଡ଼ିକରୁ ଗୋପବନ୍ଧୁଙ୍କ ଯେଉଁ ଦୂରଦୃଷ୍ଟି ଓ ସୂକ୍ଷ୍ମ-ଦୃଷ୍ଟିର ପରିଚୟ ମିଳେ, ତାହା ଯେପରି ବିସ୍ମୟକର, ସେହିପରି ଆଜି ମଧ୍ୟ ଗଭୀରଭାବେ ଅନୁଚିନ୍ତନୀୟ ।

ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଓଡ଼ିଶାର ସର୍ବବିଧ ସମସ୍ୟା ସମ୍ପର୍କରେ ଏପରି ସୁଚିନ୍ତିତ ମନ୍ତବ୍ୟ ଓ ସୁପରାମର୍ଶ ବ୍ୟକ୍ତ କରି ଜାତିକୁ ସନ୍ମାର୍ଗରେ ଅଗ୍ରସର କରିବାର ଇଙ୍ଗିତ ଦେଇଥିବା ବ୍ୟକ୍ତି ଓଡ଼ିଶାରେ ଏକାଧିକ ଜନ୍ମଗ୍ରହଣ କରିନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଗୋପବନ୍ଧୁ ଏ ଦେଶର ବହୁମୁଖୀ ପ୍ରାଣଧାରାକୁ ଅତ୍ୟନ୍ତ ନିବିଡ଼ ଭାବେ ଉପଲବ୍ଧି କରି ପାରିଥିଲେ । ତେଣୁ ଆପଣାର ବିରାଟ ବ୍ୟକ୍ତିତ୍ୱକୁ ସେ ବହୁରୂପରେ ବିଚ୍ଛୁରିତ କରି ଯାଇଅଛନ୍ତି । ସମ୍ଭବତଃ ଗୋପବନ୍ଧୁଙ୍କ ଜୀବନର ଏହି ବହୁମୁଖିନତା ତାହାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ସଙ୍କଳନ ପଥରେ ଏକ ଅନ୍ତରାୟ ହୋଇଛି ।

ନଦୀ ସାଗର ସହିତ ସମ୍ମିଳିତ ହେବା ପୂର୍ବରୁ ଆପଣାକୁ ବହୁ ଧାରାରେ ବିଭକ୍ତ କଲା ପରି ଗୋପବନ୍ଧୁଙ୍କ ଜୀବନ ବହୁ କର୍ମଧାରାରେ ଆପଣାକୁ ପରିବ୍ୟାପ୍ତ କରି ଅବଶେଷରେ ମୃତ୍ୟୁ ଆଲିଙ୍ଗନ କରିଅଛି, ମାତ୍ର ଏହି ମୃତ୍ୟୁ ମଧ୍ୟଦେଇ ସେ ଲାଭ କରିଛନ୍ତି ଅମୃତତ୍ୱ ।

କବି ଭାବରେ, କର୍ମୀ ଭାବରେ, ନେତା ତଥା ତ୍ୟାଗୀ ଭାବରେ ଗୋପବନ୍ଧୁ ଅନନ୍ୟ । ଗୋପବନ୍ଧୁଙ୍କ କୌଳିନ୍ୟ ଥିଲା, ଉଚ୍ଚ ଶିକ୍ଷା ଥିଲା, ଯତ୍ ସାମାନ୍ୟ ଆର୍ଥିକ ସଙ୍ଗତି ମଧ୍ୟ ଥିଲା । ଇଚ୍ଛା କରିଥିଲେ ସେ ସ୍ୱାଚ୍ଛନ୍ଦ୍ୟ ଓ ସମ୍ଭୋଗରେ ବହୁ ସାଧାରଣ ବ୍ୟକ୍ତିଙ୍କ ପରି ଚଳି ପାରିଥାନ୍ତେ

ମାତ୍ର ସେ ବ୍ୟକ୍ତିତ୍ୱ 'ଗଢ଼ା ଅନ୍ୟ ଉପାଦାନେ' । ଗୋପବନ୍ଧୁ ସମସ୍ତ ତ୍ୟାଗ କରିଛନ୍ତି ।

"ନିଜ ସ୍ୱାର୍ଥ ଲାଗି ଜାତି ନୁହେଁ ହିନ୍ଦୁ;
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।"

ଏହା କେବଳ ତାଙ୍କର ସାମୟିକ ଆବେଗର ଅଭିବ୍ୟକ୍ତି ନୁହେ, ଏହାହିଁ ଥିଲା ତାଙ୍କର ଜୀବନାଦର୍ଶ, ତାହା ହିଁ ସେ ଜୀବନରେ କାର୍ଯ୍ୟକାରୀ କରି ଯାଇଅଛନ୍ତି । ଗୋପବନ୍ଧୁ ଯେତେବେଳେ ଖ୍ୟାତି, ପ୍ରତିଷ୍ଠା ଓ ସମ୍ମାନର ଶୀର୍ଷସ୍ଥାନରେ ଆରୂଢ଼, ସେଇ ସମୟରେ ସେ ଆପଣାର କନ୍ୟାର ବିବାହ ଦେଇଛନ୍ତି । ସାଧାରଣ ସୁବିଧାବାଦୀ ନେତାଙ୍କ ଭଳି ସେ ଇଚ୍ଛା କରିଥିଲେ ଆପଣାର କନ୍ୟା ଦ୍ୱୟଙ୍କୁ ପ୍ରତିଷ୍ଠାବନ୍ତ, ବିଭବଶାଳୀ ବା ପ୍ରତିପତ୍ତିସମ୍ପନ୍ନ ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କରି ପାରିଥାନ୍ତେ; ମାତ୍ର ଗୋପବନ୍ଧୁ ଯେଉଁ ଦୁଇ ଯୁବକଙ୍କୁ ଆପଣାର ଜାମାତା ଭାବରେ ମନୋନୀତ କରିଛନ୍ତି, ସେମାନେ ଥିଲେ ଉପର୍ଯ୍ୟୁକ୍ତ ଯୋଗ୍ୟତାର ଠିକ୍ ବିପରୀତ । ସେହିପରି ଆପଣାର ଉପାର୍ଜିତ ସମ୍ପତ୍ତିକୁ ସେ ଆପଣାର ପରିବାରବର୍ଗଙ୍କୁ ଅର୍ପଣ ନ କରି ବହୁ ଜନ ହିତଲାଗି ହିଁ ସମ୍ପ୍ରଦାନ କରି ଯାଇଅଛନ୍ତି ।

ଅଥଚ ବିସ୍ମୟର କଥା, ଏପରି ଆଦର୍ଶନିଷ୍ଠ ବ୍ୟକ୍ତିଙ୍କ ଜୀବନରେ ଦଳଗତ, ଜାତିଗତ ସଙ୍କୀର୍ଣ୍ଣତା ଥିଲା ବୋଲି କେହି କେହି ଦୋଷାରୋପ କରିବାର ଶୁଣାଯାଏ । ୧୩୨୨ ସାଲ ଶ୍ରାବଣ ମାସରେ ପୁରୀରେ ବ୍ରାହ୍ମଣ ସମିତି ଛାତ୍ରାବାସରେ ଚନ୍ଦ୍ରଶେଖର ମୂର୍ତ୍ତି-ମନ୍ଦିର ପ୍ରତିଷ୍ଠା ହୋଇଥିଲା । ଜନସାଧାରଣଙ୍କ ଠାରୁ ଅର୍ଥ ସଂଗ୍ରହ କରି ନିଃସ୍ୱ ବ୍ରାହ୍ମଣ ଛାତ୍ରଙ୍କ ଉଚ୍ଚ ଶିକ୍ଷାରେ ଯଥାସମ୍ଭବ ସାହାଯ୍ୟ କରିବା ଏହି ବ୍ରାହ୍ମଣ ସମିତିର କାର୍ଯ୍ୟ ଥିଲା । ଏହି ସମ୍ପର୍କରେ ଗୋପବନ୍ଧୁ ଆଲୋଚନା କରି ଲେଖିଥିଲେ—"ବାର ଚୌଦ ବର୍ଷ ତଳେ ଇଂରାଜୀ ଶିକ୍ଷାପ୍ରତି ଉତ୍କଳ ବ୍ରାହ୍ମଣ ସମାଜର ଯେ ଭାବ ଥିଲା, ଆଜି ତାହା ନାହିଁ । ସେତେବେଳେ ଉତ୍ସାହ ଓ ସାହାଯ୍ୟର ପ୍ରୟୋଜନ ଥିଲା । ଆଜି କିନ୍ତୁ ଇଂରେଜୀଶିକ୍ଷା ପାଇଁ ବ୍ରାହ୍ମଣ ସମାଜର ବ୍ୟାକୁଳତା ଅନ୍ୟ କୌଣସି ସମାଜଠାରୁ ଊଣା ନୁହେଁ । ଆଜି ଏତେବେଳେ ସମାଜଗତ ଭେଦ ରଖି କୌଣସି ପିଲାକୁ ମାଇନର କିମ୍ବା ଏଣ୍ଟ୍ରାନ୍ସ ଅଥବା କାହାରିକୁ ଏଫ୍. ଏ. ବା ବି. ଏ. ପାଶ୍ କରାଇବାରେ କୌଣସି ଜାତୀୟ ଅନୁଷ୍ଠାନ ଶକ୍ତି ସୀମାବଦ୍ଧ ରହିବାର ପ୍ରୟୋଜନ ନାହିଁ ।

ଦରିଦ୍ରତା ବ୍ରାହ୍ମଣର ପୈତୃକ ସମ୍ପତ୍ତି । ସ୍ୱାଧୀନ ଚିନ୍ତା ତାହାର ବିଶେଷ ଅଧିକାର । ନିଃସ୍ୱାର୍ଥ ଜ୍ଞାନାଲୋଚନା ଓ ନୈଷ୍ଠିକ ସାଧନା ତାହାର ମୌଳିକ ବିଦ୍ୟା । ଚନ୍ଦ୍ରଶେଖର କ୍ଷତ୍ରିୟ କୁଳରେ ଜନ୍ମ ହେଲେହେଁ ଏହି ବ୍ରାହ୍ମଣ ଭାବ ତାଙ୍କ ଜୀବନର ପରମ ଲକ୍ଷଣ ଥିଲା । ବ୍ରାହ୍ମଣ ସମିତି ତାଙ୍କର ଏହି ଆର୍ଷ ଭାବର ପୂଜା କରିଅଛନ୍ତି । ଏହା ଦ୍ୱାରା ବ୍ରାହ୍ମଣସମିତିର ଗଠନରେ ଯେଉଁ ନୂତନ ପନ୍ଥା ସୂଚିତ ହେଲା, ଆଶାକରୁ ବିଚକ୍ଷଣ ଉଦ୍ୟୋକ୍ତାମାନେ ସେହି ପନ୍ଥାରେ ଉତ୍ତରୋତ୍ତର ଅଗ୍ରସର ହେବେ ।"

(ଓଡ଼ିଶାରେ ପ୍ରତିଭା ପୂଜା ୧୯୧୪)

ଗୋପବନ୍ଧୁଙ୍କ ଆଶା ହିଁ ସାର୍ଥକ ହେଉ । ଦଳ ଜାତିଗତ ସମସ୍ତ ସଂକୀର୍ଣ୍ଣତାକୁ ଅତିକ୍ରମ କରି ଗୋପବନ୍ଧୁ-ମାନସ ଯେ ବିଶ୍ୱଭାବରେ ହିଁ ଉଦବୁଦ୍ଧ ଥିଲା ଏହା କହିବା ଅନାବଶ୍ୟକ ।

ଗୋପବନ୍ଧୁଙ୍କୁ ପ୍ରଧାନତଃ ଦେଶସେବୀ ବା ରାଜନୈତିକ କର୍ମୀ ଭାବେ ଅନେକେ ଗ୍ରହଣ କରିଥାନ୍ତି । ମାତ୍ର ଗୋପବନ୍ଧୁ ମୁଖ୍ୟତଃ କବି । କବିଜନସୁଲଭ ପ୍ରଭୂତ ସଂବେଦନଶୀଳତା ତାହାଙ୍କୁ ତତ୍କାଳୀନ ପରିସ୍ଥିତିରେ ରାଜନୀତିର ପିଚ୍ଛିଳ ପଥକୁ ଟାଣି ନେଇଥିଲା । ଗୋପବନ୍ଧୁଙ୍କ ସହକର୍ମୀ ପଣ୍ଡିତ ନୀଳକଣ୍ଠ, ରାଧାନାଥଙ୍କ ସମ୍ପର୍କରେ ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି—"କବିଙ୍କ ସୁନ୍ଦର ବିରାଗେ ମୁଖ ଫେରାଅ ପଛେ ।" ଗୋପବନ୍ଧୁ ଭଞ୍ଜୀୟ ସାହିତ୍ୟ ପ୍ରତି ସବିଶେଷ ଅନୁରାଗବଶତଃ ରାଧାନାଥଙ୍କ କୋପଦୃଷ୍ଟିରେ ପଡ଼ିଥିବା ବିଷୟ ମଧ୍ୟ କେତେକଙ୍କଠାରୁ ଶୁଣାଯାଏ । ମାତ୍ର ଉଦାର ଗୋପବନ୍ଧୁମାନସରେ ରାଧାନାଥ-ସାହିତ୍ୟ ପ୍ରତି କେଉଁଠାରେ ବିରାଗ ବା କଟାକ୍ଷ ଦେଖିବାକୁ ମିଳେନାହିଁ । ପରନ୍ତୁ ସେ ଯେପରି ଉପେନ୍ଦ୍ରଭଞ୍ଜଙ୍କୁ ସମ୍ମାନ ଜଣାଇଛନ୍ତି; ସେହିପରି ରାଧାନାଥଙ୍କୁ ସମୁଚିତ ସମ୍ମାନପ୍ରଦର୍ଶନ କରି ତାହାଙ୍କୁ ଆପଣାର କୃତଜ୍ଞତା ନିବେଦନ କରିଅଛନ୍ତି ।

ଉତ୍କଳର ନାଟ୍ୟ ସାହିତ୍ୟର ଅଭିବୃଦ୍ଧି ପ୍ରତି ସୁଂସ୍ୟବହାନ୍ ମନୋବୃତ୍ତି ପରିବର୍ତ୍ତେ ତାଙ୍କର ଗଭୀର ଅନୁରାଗ ଥିଲା । ଏଣୁ ସେ ଓଡ଼ିଆ ରଙ୍ଗମଞ୍ଚାଭିନୟର ଗୁରୁତ୍ୱ ବର୍ଣ୍ଣନା କରିବାକୁ ଯାଇ ପାରଲାଖ ସ୍ୱର୍ଗୀୟ ପଦ୍ମନାଭ ଦେବ, ଶକତିର ରାଜା ରାଧାମୋହନ, ବନମାଳୀ ପତି

ପ୍ରଭୃତଙ୍କ ପ୍ରତିଷ୍ଠିତ ରଙ୍ଗମଞ୍ଚ ବିଷୟରେ ଆଲୋଚନା କରି ଆଶା ଓ ଆନନ୍ଦ ପ୍ରକାଶ କରିଛନ୍ତି ।

"ସଂରକ୍ଷଣ ମାତ୍ର ପୂର୍ବକାଳରେ ଭାରତର ଉନ୍ନତିର ମୂଳ ଥିଲା । କେବଳ ସାହିତ୍ୟ କାହିଁକି ଶିଳ୍ପ, ଶିକ୍ଷା, କଳା, ପାଣ୍ଡିତ୍ୟ ସବୁ ରାଜା ଓ ଧନାଢ଼୍ୟ ଲୋକଙ୍କ ଆନୁକୂଲ୍ୟରେ ପରିବର୍ଦ୍ଧିତ ହେଉଥିଲା । ସେହି ନୀତି ଏବେ ଅନୁସରଣ ନ କଲେ ଭାରତରେ ଏହିସବୁ କ୍ଷେତ୍ରରେ ଉନ୍ନତି ସହଜ ସାଧ୍ୟ ନୁହେଁ ।"

(ଉତ୍କଳର ନାଟ୍ୟ ସାହିତ୍ୟ ଓ ରଙ୍ଗମଞ୍ଚ)

ଆଜି ରାଜାମାନେ ବୃତ୍ତିଭୋଗୀ ସ୍ତରକୁ ଆସିଥିଲେ ହେଁ ସମାଜରେ ଯେଉଁମାନେ ଆଜି ରାଜପଦରେ ଅଧିଷ୍ଠିତ, ସେମାନଙ୍କର ସାହିତ୍ୟ, ଶିଳ୍ପ ଶିକ୍ଷା, କଳାପ୍ରଭୃତି ସଂରକ୍ଷଣ ବିଷୟରେ ମନୋଯୋଗୀ ଓ ଆକୃଷ୍ଟ ହେବା ଆଜି ମଧ୍ୟ ଆବଶ୍ୟକ ମନେହୁଏ । ଆଜି ଏ ଦେଶର ସାହିତ୍ୟିକ, ଶିଳ୍ପୀ, କଳାବିତ୍ ଓ ଶିକ୍ଷାବ୍ରତୀ ଯେ କିପରି ଲାଞ୍ଛନା, ଅନାଦର, ଅବହେଳା ଓ ଅଭାବ ମଧ୍ୟରେ କାଳାତିପାତ କରନ୍ତି, ତାହା ଅତୀବ ଶୋଚନୀୟ ।

ପୁସ୍ତକମୁଦ୍ରଣ ଶିଳ୍ପକୁ ରୁଚିକର ଓ ସୁଦୃଶ୍ୟ କରିବା ଲାଗି ସେ ଆଜକୁ ୪୭ ବର୍ଷ ପୂର୍ବେ ଚିନ୍ତାକରି ସ୍ପଷ୍ଟ ଭାବରେ ଯେଉଁ ଅଭିମତ ଦେଇଛନ୍ତି, ତାହା ଆଜି ମଧ୍ୟ ଆମର ବିବେଚ୍ୟ । "ବଙ୍ଗଳା, ନାଗେଶ୍ୱରୀ ପ୍ରଭୃତିର ଲିପି ୧୦ ପ୍ରକାରରୁ ବଳିଗଲାଣି । କିନ୍ତୁ ଛାପାଖାନା ସୃଷ୍ଟିର ପ୍ରଥମ ଯୁଗରେ ପାଦ୍ରୀମାନେ ସାଧାରଣ ବ୍ୟବହାର ପାଇଁ ଯେଉଁ ଇଂଲିଶ ବଡ଼ ଓ ସ୍ମଲ ପାଇକାର ସୃଷ୍ଟି କରିଥିଲେ, ଓଡ଼ିଆରେ ଆଜଯାଏ ତାହାହିଁ ରହିଅଛି । ବଡ଼ ସାନ, ସରୁ ମୋଟା ଅଳଙ୍କାରଯୁକ୍ତ ଚିତ୍ତାକର୍ଷକ ଅକ୍ଷର ସବୁର ପ୍ରୟୋଜନୀୟତା ଲେଖକ, ପାଠକ ଓ ମୁଦ୍ରାକରମାନେ ପ୍ରତିବେଳେ ବୁଝୁଥିଲେ ସୁଦ୍ଧା ସେ ବିଷୟରେ କେହି ଅର୍ଥ ଓ ଶ୍ରମ ବ୍ୟୟକରି ଅଭାବ ମୋଚନ କରିବାକୁ ମନ ବଳାଉ ନାହାନ୍ତି । ଲିପି ଅସୁବିଧାହେତୁ ପୁସ୍ତକ ପ୍ରଚୁରରେ ମଧ୍ୟ ଅସୁବିଧା ହେବା ସ୍ୱାଭାବିକ । × × ଓଡ଼ିଶାରେ ପାଠକ ସଂଖ୍ୟା ଦିନକୁ ଦିନ ଯେପରି ବଢୁଛି, ରୁଚି ଓ ସୌନ୍ଦର୍ଯ୍ୟ ପ୍ରତି ଅନେକଙ୍କର ଯେପରି ଦୃଷ୍ଟି ଯାଉଛି, ସୁଲଭ ମୂଲ୍ୟରେ ଗ୍ରନ୍ଥ ବିଶେଷ-ମାନଙ୍କର ସଂସ୍କରଣ ଯେପରି ଆବଶ୍ୟକ ହେଉଅଛି, ତହିଁରେ ନାନାବିଧ ଲିପିନିର୍ମାଣ ଓ ପ୍ରଚୁର ଅତୀବ ପ୍ରୟୋଜନ ।"

(ଓଡ଼ିଆ ଲିପି)

ଆଜିକାଲି ଗଣସାହିତ୍ୟର ପ୍ରଚଳନ ସପକ୍ଷରେ ବହୁତ କଥା ଶୁଣିବାକୁ ମିଳେ । ନବ ସାକ୍ଷର ଓ ପ୍ରୌଢ଼ମାନଙ୍କ ଲାଗି ସାହିତ୍ୟ ସୃଷ୍ଟି କରିବାକୁ ମଧ୍ୟ ସରକାରଙ୍କ ପକ୍ଷରୁ ଉତ୍ସାହ ଦିଆଯାଉଛି । ମାତ୍ର ଆଜକୁ ୪୫ ବର୍ଷ ପୂର୍ବେ ଯେତେବେଳେ ମୁଖ୍ୟତଃ ସ୍ୱଳ୍ପସଂଖ୍ୟକ ଶିକ୍ଷିତ ଲୋକଙ୍କ ଲାଗି ସାହିତ୍ୟ ସୃଷ୍ଟି ହେଉଥିଲା, ସେହି ସମୟରେ ହିଁ ଗୋପବନ୍ଧୁ ଲେଖକମାନଙ୍କୁ ଗଣଉପଯୋଗୀ ସାହିତ୍ୟ ସୃଷ୍ଟି କରିବାକୁ ନିର୍ଦ୍ଦେଶ ଦେଇ ଯାଇଛନ୍ତି । କେବଳ ନିର୍ଦ୍ଦେଶ ନୁହେଁ, ନିଜେ ମଧ୍ୟ ତାହା ବାସ୍ତବରେ କାର୍ଯ୍ୟକାରୀ କରି ଯାଇଛନ୍ତି । ଭାଗବତ ବୃତ୍ତରେ ସରଳ ଭାଷାରେ ସେ ପ୍ରଥମେ ଲେଖିଛନ୍ତି 'ଗୋ ମାହାତ୍ମ୍ୟ' । ସରଳ ଭାଷାରେ ସର୍ବଜନବୋଧ୍ୟ ସାହିତ୍ୟ ସୃଷ୍ଟି କରିବା ଥିଲା ଗୋପବନ୍ଧୁଙ୍କର ଆଦର୍ଶ । ଏତାଦୃଶ ସାହିତ୍ୟକୁ ସେ 'ଲୌକିକ ସାହିତ୍ୟ' ନାମରେ ଅଭିହିତ କରିଯାଇଛନ୍ତି । ଏହି ସମ୍ପର୍କରେ ସେ ଲେଖିଥିଲେ-' ଲୌକିକ ସାହିତ୍ୟ ବିନା ଜାତୀୟ ଉନ୍ନତି ଅସମ୍ଭବ । ସମାଜର କେତେକ ଉଚ୍ଚ ଶ୍ରେଣୀର ଲୋକେ ସମଗ୍ର ଜାତି ହୋଇଥିଲେ ଲୌକିକ ସାହିତ୍ୟର ପ୍ରୟୋଜନ ହୁଅନ୍ତା ନାହିଁ । ମାତ୍ର ଯେଉଁମାନେ ବିଲରେ ହଳ କରୁଛନ୍ତି, ବଗିଚାରେ ପାଣି ଦେଉଛନ୍ତି, ନଈରେ ନାଆ ବୋହୁଛନ୍ତି, ଜଙ୍ଗଲରେ କାଠ କାଟୁଛନ୍ତି, ତନ୍ତଶାଳରେ ଲୁଗା ବୁଣୁଛନ୍ତି, ସେ ଶ୍ରେଣୀର ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଅସଂଖ୍ୟ ଲୋକ ସାଧାରଣ ଯେ ଜାତିର ଗଣ୍ଡି । ଉଚ୍ଚ ଶ୍ରେଣୀର କେତେକ ଶିକ୍ଷିତ ଲୋକେ ଜାତିର ମସ୍ତିଷ୍କ ହୋଇପାରନ୍ତି । ମାତ୍ର ଏହି ସାଧାରଣଙ୍କ ମଧ୍ୟରେ ଜାତିର ହୃଦୟ, ଜାତିର ଆତ୍ମାର ସ୍ଥାନ । ସେମାନଙ୍କ ପ୍ରାଣରେ ସୌନ୍ଦର୍ଯ୍ୟ ଗ୍ରହଣର ପିପାସା ଅଛି, ଆହ୍ଲାଦ ଆମୋଦର ପ୍ରବୃତ୍ତି ଅଛି, ଉନ୍ନତିର ଆକାଂକ୍ଷା ମଧ୍ୟ ଅଛି । ଏହି ଆକାଂକ୍ଷା ଓ ପ୍ରବୃତ୍ତିସକଳର ତୃପ୍ତି ନିମନ୍ତେ ସେମାନେ ସାହିତ୍ୟ ଲୋଡନ୍ତି । ଉପଯୋଗୀ ସାହିତ୍ୟ ନ ପାଇଲେ ସେମାନଙ୍କ ହୃଦୟର ଭାବସକଳ ମରିଯିବ । ନ ହେଲେ ବିପଥରେ ଚାଲିବ ।'' × × ଆମ୍ଭମାନଙ୍କ ସାହିତ୍ୟିକ ଉଦ୍ୟମରୁ ଲୋକସାଧାରଣଙ୍କୁ ବାଦଦେଲେ ଜାତୀୟ ସାହିତ୍ୟ ଅସମ୍ଭବ ହେବ । ଉଚ୍ଚଭାବ ଓ ଉଚ୍ଚ ଭାଷାରେ ଯେ ସାହିତ୍ୟ ଲେଖା ନ ହେବ, ତାହା କେହି କହୁ ନାହିଁ । ତାହା ଯେତେ ଅଧିକ ଲେଖା ହୁଏ ଜାତିର ଏବଂ ଭାଷାର ତେତେ ଗୌରବ; କିନ୍ତୁ ସେ ସବୁ ଭାବରାଶି ସରଳ ସ୍ୱଚ୍ଛ ଭାଷାପ୍ରଣାଳୀରେ ନିମ୍ନସ୍ତରକୁ ପ୍ରବାହିତ ନ ହେଲେ ତାହା ସମଗ୍ର ଜାତିର ସମ୍ପତ୍ତି ହେଲା ବୋଲି କୁହାଯାଇପାରିବ ନାହିଁ ।

ପୁନଶ୍ଚ ଓଡ଼ିଆରେ ପ୍ରକାଶିତ ହେଉଥିବା ପୁସ୍ତକମାନଙ୍କ ମଧ୍ୟରୁ ଅଧିକାଂଶ ପୁସ୍ତକ ସାହିତ୍ୟ ଉପଯୋଗୀ ନ ହେଉଥିବାରୁ ମଧ୍ୟ ସେ କ୍ଷୋଭ ପ୍ରକାଶ କରି ଲେଖିଥିଲେ—"ଶିଷ୍ଟାଗ୍ରର ଜଗି ଅତି କୋମଳ ଭାଷାରେ କହିଲେ, ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରକାଶିତ ହୋଇ ନ ଥିଲେ ଭଲ ହୋଇଥାନ୍ତା ଏବଂ ଓଡ଼ିଆ ସାହିତ୍ୟର ଗୌରବ କ୍ଷୁର୍ଣ୍ଣ ହୋଇ ନ ଥାନ୍ତା ।" × × ଲୋକମାନଙ୍କୁ ଯାହା ଭଲ ଲାଗିବ ସେହି-ଭଳି ଯେ ସେ ପ୍ରକାରର ଖଣ୍ଡେ ଖଣ୍ଡେ ଚଟି ବହି ଛପାଇ ଦୁଇଗୁଣ ପଇସା ମୂଲ୍ୟରେ ଅଣ୍ଟୁ ବିକ୍ରିଦ୍ୱାରା କିଛି ଅର୍ଥୋପାର୍ଜ୍ଜନ ଚେଷ୍ଟା କରିବା ଅର୍ଦ୍ଧଶିକ୍ଷିତ ଲୋକଙ୍କ ପକ୍ଷେ ସ୍ୱାଭାବିକ । ମାତ୍ର ଯେଉଁମାନେ ସାମାନ୍ୟ ଅର୍ଥଲାଭ ନିମନ୍ତେ ଲୋକସମାଜର ନୀଚ ପ୍ରବୃତ୍ତିର ଆହ୍ଲାଦ, ଆମୋଦ ବିଧାନ କରିବା ଲାଗି କଦର୍ଯ୍ୟ ପୁସ୍ତକ ଲେଖନ୍ତି, ସେମାନେ ଅର୍ଥ ଆଶାରେ ବିଷାକ୍ତ ମାଦକ ଦ୍ରବ୍ୟ ବିକ୍ରୟ କରନ୍ତି ବୋଲିବାକୁ ହେବ । ମାଦକତାର ନିବାରଣ ନିମନ୍ତେ ଯେପରି ସ୍ଥାନେ ସ୍ଥାନେ ସଂଯମ ସମିତିମାନ କାର୍ଯ୍ୟ କରୁଅଛି, ସାହିତ୍ୟ ରାଜ୍ୟରେ ଏ ଶ୍ରେଣୀର ବିଷାକ୍ତ ମାଦକଦ୍ରବ୍ୟର ପ୍ରଚାର ବନ୍ଦ କରିବା ଲାଗି ବିଶେଷ ଭାବରେ ଉଦ୍ୟମ ହେବା ଉଚିତ ।" × × ମାତ୍ର ଏ ଅବର୍ଜନା ନିବାରଣ ନିମନ୍ତେ ଆଇନ ପ୍ରକୃଷ୍ଟ ପନ୍ଥା ନୁହେଁ । ସମାଜରେ ସୁରୁଚିସମ୍ପନ୍ନ ସୁସ୍ଥ ବଳିଷ୍ଠ ମତ ଗଠିତ ନ ହେବା ଯାଏ, ଏ ବିଷର ପ୍ରସାର ବନ୍ଦ ହେବ ନାହିଁ । ସେଥିଲାଗି ଲୋକଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ ଉଚ୍ଚ ଆଦର୍ଶର ପୁସ୍ତକମାନଙ୍କର ବହୁଳ ପ୍ରଚାର ଆବଶ୍ୟକ ।

(ବୁଦ୍ଧ ଓ ଓଡ଼ିଆ—୧୯୧୯)

ଗୋପବନ୍ଧୁଙ୍କ ଏହି ଉକ୍ତି କେବଳ ଓଡ଼ିଆ ସାହିତ୍ୟ ନୁହେଁ ସବୁ ଦେଶର ଓ ସବୁ କାଳର ସାହିତ୍ୟ ପ୍ରତି ପ୍ରଯୁଜ୍ୟ । ଗୋପବନ୍ଧୁ ମାନସ ରକ୍ଷଣଶୀଳ ନ ଥିଲା । ଆଧୁନିକତାର ଯାହା ଗ୍ରହଣୀୟ ସମ୍ପଦ, ତାକୁ ସେ ଯେପରି ସାଗ୍ରହରେ ସ୍ୱାଗତ କରିଛନ୍ତି, ସେହିପରି ପୁରାତନର ବର୍ଜନୀୟ ବିଷୟକୁ ପରିତ୍ୟାଗ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ଇଂରାଜୀ, ସଂସ୍କୃତ ଉଭୟ ଶିକ୍ଷାର ପକ୍ଷପାତୀ ଥିଲେ ଗୋପବନ୍ଧୁ । ପୁରୀରେ ସଂସ୍କୃତ କଲେଜ ପ୍ରତିଷ୍ଠା ଓ ଉତ୍କଳ ପଣ୍ଡିତ ସମ୍ମିଳନୀର ୨ୟ ଅଧିବେଶନ ସମ୍ପର୍କରେ ସେ ଲେଖିଥିଲେ "ଇଂରାଜୀ ସଂସ୍କୃତ ଉଭୟ ଶିକ୍ଷାର ସମ୍ମିଳନ ଫଳରେ ଆମ୍ଭମାନଙ୍କର ଦେଶିକ ସାହିତ୍ୟ ଶକ୍ତିଶାଳୀ ହେବ

ଏହା ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଆଶା । ପ୍ରତ୍ୟେକ ଜିଲ୍ଲାର ରାଜଧାନୀରେ ଏପରି ଗୋଟିଏ ଗୋଟିଏ ସାହିତ୍ୟ ସମାଜ ପ୍ରତିଷ୍ଠିତ ହେବା ସର୍ବଥା ବାଞ୍ଛନୀୟ । ବଙ୍ଗ ଦେଶର ଅନେକ ଜିଲ୍ଲାରେ ଏରୂପ ଅନୁଷ୍ଠାନମାନ ହୋଇଅଛି । ଏହାଦ୍ୱାରା ସ୍ଥାନୀୟ ଶିକ୍ଷିତ ସମାଜର ସାହିତ୍ୟଚର୍ଚ୍ଚା ପ୍ରତି ଆଗ୍ରହ ଓ ମମତା ଆକୃଷ୍ଟ ହେବା ସ୍ୱାଭାବିକ । ଆମ୍ଭେମାନେ ବାରମ୍ବାର କହିଥାଉ ଦେଶରେ ସବୁଠି ସାହିତ୍ୟ ସଭା, ପାଠାଗାର ପୁସ୍ତକାଳୟ ସ୍ଥାପିତ ହୋଇ ଚତୁର୍ଦ୍ଦିଗରେ ଶିକ୍ଷା ଓ ସାହିତ୍ୟର ସ୍ରୋତ ପ୍ରବାହିତ ନ ହେବା ଯାଏ, ଜାତୀୟ ଜାଗରଣ ସମ୍ଭବପର ହେବନାହିଁ ।" (ସାହିତ୍ୟାନୁଷ୍ଠାନ)

ସେହିପରି, ବିହାର-ଓଡ଼ିଶା ଅନୁସନ୍ଧାନ ସମିତି (Research Society) ସ୍ଥାପିତ ହେଲାବେଳେ ସେ ଉତ୍କଳୀୟମାନଙ୍କୁ ପ୍ରତ୍ନତତ୍ତ୍ୱାନୁସନ୍ଧାନ ଓ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ଲାଗି ଜାଗ୍ରତ ହେବାକୁ ଆହ୍ୱାନ ଜଣାଇଅଛନ୍ତି । ସମ୍ଭବତଃ ତାଙ୍କର ପ୍ରବର୍ତ୍ତନାର ପରିଣତି—କୃପାସିନ୍ଧୁ ମିଶ୍ରଙ୍କର ଉନ୍ନତ ଗବେଷଣା ଓ ଇତିହାସ ପ୍ରଣୟନ ।

ଦେଶରେ ଅବୈତନିକ ପ୍ରାଥମିକ ଶିକ୍ଷାର ପ୍ରବର୍ତ୍ତନ ଥିଲା ଗୋପବନ୍ଧୁଙ୍କର ଉଦ୍ଦେଶ୍ୟ । ସେତେବେଳେ ଅବୈତନିକ ଶିକ୍ଷା ସମ୍ପର୍କୀୟ ପ୍ରସ୍ତାବଟି ବ୍ୟବସ୍ଥାପକ ସଭାରେ ଗୃହୀତ ନ ହେବାରୁ ଗୋପବନ୍ଧୁ କ୍ଷୁବ୍ଧହୋଇ ଲେଖିଥିଲେ—"ଅକ୍ଷର ଦେବତା, ଅକ୍ଷର ବ୍ରହ୍ମ; ଏଣୁ ନିରକ୍ଷର ହେବା ମହାପାପ । ସମାଜର ସମସ୍ତଙ୍କର ନିତାନ୍ତପକ୍ଷେ ବର୍ଣ୍ଣପରିଚୟ ହେବା ଆବଶ୍ୟକ ।" × × × ଲୋକଙ୍କର ଅକ୍ଷର ପରିଚୟ ନ ହେଲେ ଏ ଜାତିର ମୁକ୍ତି ନାହିଁ··· ।"

ଦେଶୀୟ ଭାଷାର ଭବିଷ୍ୟତ ସମ୍ପର୍କରେ ସେ ଥିଲେ ଖୁବ୍ ଆଶାନ୍ୱିତ ଓ ଦୃଢ଼ ବିଶ୍ୱାସୀ । ଇଂରାଜୀ ପରିବର୍ତ୍ତେ ମାତୃଭାଷା ସାହାଯ୍ୟରେ ଶିକ୍ଷା ପ୍ରଦତ୍ତ ହେଉ, ଏହା ଥିଲା ତାଙ୍କର ଦୃଢ଼ ମତ । ଏଣୁ ଏହି ବିଷୟରେ ସେ ନିର୍ଭୀକଭାବେ ଲେଖିଥିଲେ—"ଯେଉଁ ଭାଷା ପ୍ରଜା ସାଧାରଣ ବୁଝନ୍ତି, ସେହି ଭାଷାରେ ଶାସନକାର୍ଯ୍ୟ ଚଳିବା ଉଚିତ । ଶାସନପ୍ରଣାଳୀ ଓ ପ୍ରକ୍ରିୟା ଲୋକ ସାଧାରଣଙ୍କର ଅବୋଧ ହୋଇ ରହିବା କଦାପି ବାଞ୍ଛନୀୟ ନୁହେଁ । ଭାରତରେ ପ୍ରାଦେଶିକ ଶାସନ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ ହେଲେ ଏବଂ ଶାସନକାର୍ଯ୍ୟରେ ଲୋକ ସାଧାରଣଙ୍କର ସହଯୋଗିତା ଓ କର୍ତ୍ତୃତ୍ୱ ରହିଲେ ଇଂରେଜୀ ପରିବର୍ତ୍ତେ ପ୍ରାଦେଶିକ

ଭାଷାର ବ୍ୟବହାର ଯେ ବିଶେଷ ପ୍ରୟୋଜନ ହେବ, ଏହା ସହଜରେ ଅନୁମାନ କରାଯାଇପାରେ ।"

ମାତ୍ର ପରିତାପର ବିଷୟ, ସ୍ୱାଧୀନତା ପାଇବାର ୧୨ ବର୍ଷ ପରେ ମଧ୍ୟ ଆମ ଓଡ଼ିଶାରେ ମାତୃଭାଷା ପ୍ରତି ଆଶାନୁରୂପ ଆଦର ପରିଲକ୍ଷିତ ହେଉନାହିଁ । ଏ ଦେଶରେ ଓଡ଼ିଆ ଭାଷା ଯେଉଁ ସମ୍ମାନ ଓ ଗୌରବ ପାଇବାର କଥା, ତାହା ଆଜି ମଧ୍ୟ ପାଇନି ବୋଲି ମନେ ହୁଏନାହିଁ । ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଏ ଦେଶର ସାହିତ୍ୟ ତଥାକଥିତ ଇଂରେଜୀ ଶିକ୍ଷାପ୍ରାପ୍ତ ବ୍ୟକ୍ତିମାନଙ୍କଦ୍ୱାରା ଅନାଦୃତ, ଅବହେଳିତ ଓ ଲାଞ୍ଛିତ ହେଉଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଣୁ ଉତ୍କଳ ସାହିତ୍ୟ ସମାଜର ନିଶ୍ଚେଷ୍ଟତାକୁ ଲକ୍ଷ୍ୟକରି ସେ ଲେଖିଥିଲେ—"ଉତ୍କଳ ସାହିତ୍ୟ ସମାଜ ଓଡ଼ିଶାର ଏକମାତ୍ର ସାହିତ୍ୟିକ ଦଳଗତ ଅନୁଷ୍ଠାନ । ଉତ୍କଳ-ସମ୍ମିଳନୀ ପୂର୍ବରୁ ଏହାର ସୃଷ୍ଟି । × × ଅନ୍ୟାନ୍ୟ ପ୍ରଦେଶର ସାହିତ୍ୟ ସମାଜମାନଙ୍କ ଦୃଷ୍ଟିରେ ଉତ୍କଳ ସାହିତ୍ୟ ସମାଜର ଗତି ଯେ କିଛି ନୁହେଁ, ଏହା ବଡ଼ ଆକ୍ଷେପଜନକ କହିବା ନିଷ୍ପ୍ରୟୋଜନ । × × × ଯେ କୌଣସି ଦଳଗତ ଉଦ୍ୟମର ବ୍ୟକ୍ତିବିଶେଷ ସଭ୍ୟ ପ୍ରତ୍ୟେକେ ଅନୁଷ୍ଠାନ ପ୍ରତି ନିଜର ସାଧ୍ୟମତେ କର୍ତ୍ତବ୍ୟ ପାଳନ ନ କଲେ ଏବଂ ସମଗ୍ର ଜାତିର ତହିଁପ୍ରତି ସହାନୁଭୂତି ନ ଜନ୍ମିଲେ, ସମୃଦ୍ଧ ଉନ୍ନତି ହେବ କାହୁଁ ? ଉପଯୁକ୍ତ ସଂଖ୍ୟକ ସଭ୍ୟ ଅନୁପସ୍ଥାନ ହେତୁ ଉତ୍କଳ ସାହିତ୍ୟ-ସମାଜର ଯେ କୌଣସି କୌଣସି ଅଧିବେଶନ ହୋଇ ପାରି ନାହିଁ, ଏପରି ଦିନ ଥିଲା । × × × ଓଡ଼ିଶାରେ ଧନ ସଙ୍ଗେ ବିଦ୍ୟାର ଯୋଗ ନାହିଁ । ପୁଣି ଧନୀ ବା ଜ୍ଞାନୀମାନଙ୍କର ନିଜ ମଧ୍ୟରେ ସହଯୋଗିତା ନାହିଁ । ଏନ୍‌ସାଇକ୍ଲୋପିଡ଼ିଆ ଭଳି କାର୍ଯ୍ୟ ଭିନ୍ନ ଭିନ୍ନ ଦେଶର ସାହିତ୍ୟ-ରାଜ୍ୟରେ ସଂପାଦିତ ହେଉଅଛି । ଆଖି ଆଗରେ ବଙ୍ଗ ଦେଶରେ ବିଶ୍ୱକୋଷ ସଂକଳିତ ହୋଇଅଛି । କିନ୍ତୁ ନିକଟ ଭବିଷ୍ୟତରେ ଉତ୍କଳ ସାହିତ୍ୟକ୍ଷେତ୍ରରେ ସେଭଳି ଗୋଟିଏ କାର୍ଯ୍ୟ ସ୍ୱପ୍ନରେ ଆଶା କରାଯାଇ ପାରେ କି ?"

ଏହିପରି ସାହିତ୍ୟକ୍ଷେତ୍ରରେ ବିଭିନ୍ନ ଅଭାବର ହେତୁ ପ୍ରଦର୍ଶନ କରିବାକୁ ଯାଇ ସେ ଲେଖିଛନ୍ତି—"ଏହି ସମସ୍ତ ଅଭାବର ନାନା ହେତୁ ମଧ୍ୟରେ ଶିକ୍ଷା ଅନୁନ୍ନତି ପ୍ରଥମ, ଦ୍ୱିତୀୟ ଲୋକସାଧାରଣଙ୍କ ଦରିଦ୍ରତା

ଏବଂ ସର୍ବପ୍ରଧାନ ହେଉଛି ସାହିତ୍ୟ ନିମନ୍ତେ ଧନୀମାନଙ୍କର ସମୁଚିତ ଦାନର ଅଭାବ । ଏ ଅବସ୍ଥାରେ ଉତ୍କଳ ସାହିତ୍ୟ ସମାଜ କିପରି କି କାର୍ଯ୍ୟ ଦେଖାଇବ !"

(ସାହିତ୍ୟ-ସମାଜ)

ଶତାଧିକ ବର୍ଷପୂର୍ବେ ଲିଖିତ ଗୋପବନ୍ଧୁଙ୍କ ଏହିସବୁ ଉକ୍ତି ଆଜି ମଧ୍ୟ ଆମ ପକ୍ଷେ ଗଭୀରଭାବେ ଚିନ୍ତନୀୟ ଓ ପ୍ରଣିଧାନଯୋଗ୍ୟ । ଇତିମଧ୍ୟରେ ଓଡ଼ିଶାରେ ଅଳ୍ପ ବହୁତେ ଶିକ୍ଷାର ପ୍ରସାର ଘଟିଛି । କୃଷକଶ୍ରେଣୀର ଅବସ୍ଥା ପୂର୍ବାପେକ୍ଷା ଉନ୍ନତ ହୋଇଛି । କେତେ ଶିଳ୍ପପତି, ବ୍ୟବସାୟୀ ଓ ଧନିକଙ୍କ ନାମ ଆଜିକାଲି ଆମେ ଶୁଣୁଛୁ । ମାତ୍ର ଓଡ଼ିଆ ସାହିତ୍ୟ ଆଜି ସେମାନଙ୍କ ଦାନରୁ ଯେ ବଞ୍ଚିତ ଏହା କହିବା ବାହୁଲ୍ୟ ମାତ୍ର । ପରନ୍ତୁ ସାହିତ୍ୟ ସରକାରୀ ନିୟନ୍ତ୍ରଣମୁକ୍ତ ହେବା କାମ୍ୟ ହେଲେହେଁ ସାହିତ୍ୟ ଆଜି ସରକାରୀ ସାହାଯ୍ୟପ୍ରାର୍ଥୀ ହେବାକୁ ବାଧ୍ୟ ହେଉଛି ।

ପରିଶେଷରେ ଏ ସମ୍ପର୍କରେ ଗୋପବନ୍ଧୁ ଯଥାର୍ଥତଃ ଲେଖିଛନ୍ତି —"ଯେଉଁମାନଙ୍କର ସାହିତ୍ୟର ଚର୍ଚ୍ଚା ନିମନ୍ତେ ଶକ୍ତି ଏବଂ ସମୟ ଅଛି, ସେମାନଙ୍କ ଉପରେ ଯେ ଗୁରୁତର ଦାୟିତ୍ୱ ରହିଅଛି ବୋଲିବା ବାହୁଲ୍ୟ । ମାତ୍ର ଅନ୍ୟମାନେ ଦାୟିତ୍ୱରୁ ମୁକ୍ତ ନୁହନ୍ତି । କୌଣସି ଲେଖକର ପୁସ୍ତକ ଖଣ୍ଡେ କିଣିବା ବା ତାହାର ପ୍ରଚାରରେ କୌଣସି ପ୍ରକାର ସାହାଯ୍ୟ କରିବା, କୌଣସି ସାହିତ୍ୟପତ୍ରକୁ ଯେ କୌଣସି ପ୍ରକାରେ ଉତ୍ସାହ ଦେବାର ସୁବିଧା ଅନେକଙ୍କର ଅଛି । ଯେ ଯାହା କ୍ଷେତ୍ରରେ ସାହିତ୍ୟ ଉନ୍ନତିରେ ସହାୟତା ନ କଲେ ଉତ୍କଳ-ସାହିତ୍ୟ-ସମାଜ କଅଣ ଆକାଶରୁ ଫଳ ପେଡ଼ିଆଣି ଦେଶବାସୀଙ୍କ ହାତରେ ଧରାଇଦେବ ।"

ଶିଳ୍ପ, ସଭ୍ୟତା, ନୀତିପ୍ରଭୃତି ବିଭିନ୍ନ ବିଷୟରେ ଏକ ଆଦର୍ଶ ସମାଲୋଚନାମୂଳକ ପତ୍ରିକାଭାବେ 'ସତ୍ୟବାଦୀ' ପତ୍ରିକାଟି ଗୋପବନ୍ଧୁ ୧୯୧୪ ମସିହାରୁ ପ୍ରକାଶ କରାଇଥିଲେ । 'ଏଣୁ ସତ୍ୟବାଦୀର ନବପ୍ରସ୍ଥ' ସମ୍ପର୍କରେ ଆଲୋଚନାପ୍ରସଙ୍ଗରେ ଲେଖିଥିଲେ—"ସମାଲୋଚନାର ଆଦର କରିବାକୁ ହେବ । ସାହିତ୍ୟସାଧନାରେ ଏହା ପ୍ରଥମ ସୋପାନ । ଆମ୍ଭେମାନେ ସାହିତ୍ୟରେ ଏହି ବିଭାଗ ଜାଗ୍ରତ କରିବା ଉଦ୍ଦେଶ୍ୟରେ ପ୍ରଥମେ 'ସତ୍ୟବାଦୀ' ଆରମ୍ଭ କରିଥିଲୁ । ମୁଖ୍ୟତଃ ସତ୍ୟବାଦୀରେ ତାହା ହିଁ ପ୍ରକାଶ କରିଥିଲୁ; କିନ୍ତୁ କେତେକ ବନ୍ଧୁ ଲୋକଙ୍କ ଛଡ଼ା

ଅନ୍ୟମାନେ ତାହାର ସମ୍ମାନ କଲେ; ମାତ୍ର ଆସ୍ୱାଦନ କଲେ ନାହିଁ । କାଗଜ ଚଳିବା ଏଥିରେ ଦୁଷ୍କର । × × × ଅନ୍ୟ କାରଣରୁ ଯେଉଁ ପୁସ୍ତକ ପ୍ରତି ଆଦର ଓ ସମ୍ମାନ ଅଛି ତାହା କିଣିବା ହିଁ ଏକ ପ୍ରକାର ସାହିତ୍ୟସେବା । ଲୋକସାଧାରଣ ଯେତେ ଦିନ ଏହା ବୁଝି ଏହି ଅନୁସାରେ କାର୍ଯ୍ୟ କରି ନାହାନ୍ତି, ସେତେ ଦିନ ସାହିତ୍ୟର ଉନ୍ନତି ହେବ ନାହିଁ ଏବଂ ଓଡ଼ିଆ-ସାହିତ୍ୟର ଉନ୍ନତି ନ ହେଲେ ଜାତିର ଉନ୍ନତି ଏକ ପ୍ରକାର ଅସମ୍ଭବ ।" (ସତ୍ୟବାଦୀ-୬ଷ୍ଠ ଖଣ୍ଡ, ୧ମ ସଂଖ୍ୟା)

ଭକ୍ତକବି ମଧ୍ୟ ଦିନେ ଆବେଗଜଡ଼ିତ କଣ୍ଠରେ ଗାଇଥିଲେ—

"ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ
ଏ ମାନବ ଜନ୍ମ ହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।"

ମାତ୍ର ଯେଉଁ ଯୁଗରେ ମଣିଷ ବିଶେଷଭାବେ ଆତ୍ମକେନ୍ଦ୍ରିକ ହୋଇ ବିଶ୍ୱଭ୍ରାତୃତ୍ୱର ଆସ୍ଫାଳନ କରେ, ଆତ୍ମସେବା ଯେଉଁ ଯୁଗରେ ଧର୍ମ ଓ ଅର୍ଥ ହିଁ ଯେଉଁ କାଳରେ ସର୍ବସ୍ୱ ବିବେଚିତ, ସେ ଯୁଗରେ ସତ୍ୟବାଦୀର ବାଣୀ ଯେ ଉପେକ୍ଷିତ ହେବ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ସାହିତ୍ୟକୁ ବାଦ୍‌ଦେଇ ଦେଶ ଓ ଜାତିର ଅନ୍ୟାନ୍ୟ ଦିଗରେ ଉନ୍ନତି ଆଜି ବିଶେଷ ଭାବେ କାମ୍ୟ ମନେହେଉଛି । ମାତ୍ର ଆହୁରି ଦୁଃଖର ବିଷୟ, ଓଡ଼ିଆରେ ଲେଖିବା ତ ଦୂରର କଥା, ଓଡ଼ିଆ ପୁସ୍ତକ ବା ପତ୍ରପତ୍ରିକା ଯେଉଁମାନେ ପାଠ କରିବାକୁ ମଧ୍ୟ କୁଣ୍ଠିତ, ସେଇମାନେ ହିଁ ଏ ସାହିତ୍ୟର ପ୍ରଧାନ ନିନ୍ଦୁକ ।

ସେ ଯାହାହେଉ, ସାହିତ୍ୟ, ଶିକ୍ଷା, ସଂସ୍କୃତି ବ୍ୟତୀତ ଗୋପବନ୍ଧୁ ରାଜନୈତିକ ଆନ୍ଦୋଳନର ଆତ୍ମନିର୍ଭରତା, ସାମ୍ପ୍ରଦାୟିକ ବିବାଦ, ଭାରତ ସଚିବଙ୍କଠାରେ ଓଡ଼ିଆଙ୍କ ଆବେଦନ, ଛାତ୍ର-ସମ୍ମିଳନୀ, ଉତ୍କଳ-ସମ୍ମିଳନୀ ଓ ଭାରତ-ଜାତୀୟତା, ଭାରତୀୟ ଶାସନସଂସ୍କାରପ୍ରଭୃତି ରାଜନୈତିକ ବିଷୟରେ ଦୀର୍ଘ ଆଲୋଚନା କରିଯାଇଅଛନ୍ତି । ଆୟୁର୍ବେଦ ଚିକିତ୍ସା, ବନ୍ୟାବିପ୍ଳବ, ବିଦ୍ୟାଳୟରେ ସେବାଶିକ୍ଷା, ଜେଲରେ ଧର୍ମଶିକ୍ଷା, ହିନ୍ଦୁର ଅକାଳ ଗାର୍ହସ୍ଥ୍ୟ ଜୀବନ, ଖୋଲା ସ୍କୁଲ ଓ ପଲ୍ଲୀ ପ୍ରସଙ୍ଗରେ ଧାରାବାହିକ

ଆଲୋଚନାରୁ ତାହାଙ୍କର ବିଭିନ୍ନ ବିଷୟରେ ସୁଗଭୀର ପାଣ୍ଡିତ୍ୟ ଓ ଅଭିଜ୍ଞତାର ପରିଚୟ ମିଳିଥାଏ ।

ମୋଟ ଉପରେ ଏହି 'ସତ୍ୟବାଦୀ' ସାହିତ୍ୟ ପତ୍ରିକାର ପ୍ରଧାନ ବିଭବ ଥିଲା ସଂପାଦକ ଗୋପବନ୍ଧୁଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଦୀର୍ଘ ଆଲୋଚନା-ଗୁଡ଼ିକ । ଦେଶର ବହୁ ଗୁରୁତର ବିଷୟ ଗୋପବନ୍ଧୁଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଉଦାର ମାନସମୁକୁରରେ କିପରି ପ୍ରତିଫଳିତ ହୋଇଥିଲା, ତାହା ହିଁ ସେଥିରେ ମୂଦ୍ରିତ । ତନ୍ମଧ୍ୟରୁ କେତୋଟିକୁ ଆଧାର କରି ଏହି ପ୍ରବନ୍ଧ ଲିଖିତ ।

———

# ଦିବ୍ୟଦର୍ଶୀ ଗୋପବନ୍ଧୁ

ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର

ଦିନ ପରେ ଦିନ ଚାଲିଯାଉଛି,—କେତେ ଝଡ଼ଝଞ୍ଜା ଅତିକ୍ରମ କରି ଜାତିର ଜୀବନ ଭେଲା ତଥାପି ସମୟର ନିତ୍ୟ ବର୍ଦ୍ଧମାନ ପ୍ରବାହରେ ଭାସି ଭାସି ଧାଇଁଛି ଅସମ୍ଭାଳ ହୋଇ । କେତେ ଶିଳାସଙ୍କଟର ସମ୍ମୁଖୀନ ହେବାକୁ ସେ ବାଧ୍ୟ ହୋଇଛି, ମାତ୍ର ଦୁରନ୍ତ ବିପଦ-ବାଧାକୁ ଭ୍ରୂକ୍ଷେପ ନ କରି ତଥାପି ଦୁର୍ବାର ଗତିରେ ଆଗେଇ ଚାଲିଛି ସେ । ତା'ର ଏଇ ଦୁର୍ବାର ଧାବନ ଜାତିର ଇତିହାସରେ ଲିପିବଦ୍ଧ ହେଉ ବା ନ ହେଉ, ତାହାର ମହତ୍ତ୍ୱ ଅପରିସୀମ ଏବଂ ତାହାର ଉତ୍କର୍ଷ ଯେ ଅଚିନ୍ତନୀୟ, ଏଥିରେ ସଂଶୟର ଅବକାଶ ରହି ନ ପାରେ । ଏହି ମହତ୍ତ୍ୱ ଓ ଉତ୍କର୍ଷ ପ୍ରତିପାଦନ କରିବାଲାଗି ଯେଉଁ କର୍ମବୀର ଓ ତ୍ୟାଗବୀରମାନେ ଆପ୍ରାଣ ନିର୍ଭୀକଭାବରେ ତଥା ଅଦମ୍ୟ ଉଦ୍ୟମବଳରେ 'ଶରୀରଂ ବା ପାତୟେତ୍ ମନ୍ତ୍ରଂ ବା ସାଧୟେତ୍' ଏହି ଆର୍ଷବାଣୀର ଗୁରୁତ୍ୱକୁ କର୍ମଜୀବନରେ ପଦେପଦେ ଉପଲବ୍ଧି କରି ସମଗ୍ର ଜାତିକୁ ଉଦ୍‌ବୁଦ୍ଧ କରି ଆସିଅଛନ୍ତି, ସେହିମାନେ ହିଁ ଯୋଗଜନ୍ମା ଜାତିସ୍ମର । ସେମାନଙ୍କ ଦେଦୀପ୍ୟମାନ ତେଜ କେବଳ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ରଞ୍ଜିତ ହୋଇଗଲେ ତାଙ୍କ ମହତ୍ତ୍ୱର ପୂର୍ଣ୍ଣାଙ୍ଗ ବିକାଶ ପାଇଲା ବୋଲି କହିବା ବାତୁଳତା ମାତ୍ର । ଯୁଗେ ଯୁଗେ ଉଦ୍ୟମଶୀଳ ଜାତୀୟଜୀବନ ହିଁ ଏହି ମହତ୍ତ୍ୱ ଓ ଗୁରୁତ୍ୱର ଏକମାତ୍ର ମାନଦଣ୍ଡ ଏବଂ ପ୍ରବୁଦ୍ଧ କର୍ମବୀରର ଚିତ୍ରଫଳକରେ ହିଁ ତାଦୃଶ ଜାତିସ୍ମରମାନଙ୍କର ଜ୍ୱଳନ୍ତ ଆଲେଖ୍ୟ ଚିରନ୍ତନ ଜ୍ୟୋତିରେ ପ୍ରତିଭାତ ହୋଇଥାଏ, କହିବା ବାହୁଲ୍ୟ ମାତ୍ର ।

ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଉନ୍ନତ ଜୀବନ ଏହି ଦୃଷ୍ଟିରୁ ଯୁଗେଯୁଗେ ଜାତିର ଅନୁସରଣୀୟ ଆଦର୍ଶ । ବହୁତୋମୁଖୀ ପ୍ରତିଭାର ବାସ୍ତବ

ଅଭିବ୍ୟକ୍ତ ହୋଇପାରିଛି ତାଙ୍କର ଜୀବନରେ । କଠୋର କର୍ମନିଷ୍ଠାର ଦୃଷ୍ଟାନ୍ତ ପ୍ରତୀକ ସେ ଏବଂ ଆଜୀବନ ସାଧନାର ଉତ୍ତୁଙ୍ଗ ସୌଧ ଜୀବନ୍ତ କଳାନୈପୁଣ୍ୟରେ ଭାରତସାରା ସୁବିଦିତ ଓ ବହୁ ପ୍ରଶଂସିତ ହୋଇ ଦଣ୍ଡାୟମାନ ହୋଇପାରିଛି ତାଙ୍କର ଚରମ ତ୍ୟାଗର ସୁଦୃଢ଼ ଭିତ୍ତିଉପରେ । ଏକାଧାରରେ ଦ୍ରଷ୍ଟା ଓ ସ୍ରଷ୍ଟା ସେ ନିଜେ । ତାଙ୍କ ଦିବ୍ୟଦର୍ଶନ ଓ ଦୂରଦୃଷ୍ଟି ଦୁଃଖବିଦୀର୍ଣ୍ଣ ଜାତୀୟଜୀବନରେ ଯେଉଁ ପରିବର୍ତ୍ତନ ଆଣିଥିଲା, ତାହାର ବାସ୍ତବତା କେବଳ ସ୍ମୃତିର ସସୀମ ପରିସରରେ ସୀମାବଦ୍ଧ ହୋଇ ରହି ନ ପାରେ; ତାହାର ଅପରିମେୟ ମହିମା ଏ ଜାତିର ଅସ୍ଥି-ମଜ୍ଜାଗତ ହୋଇ ପଡ଼ିଛି ଓ ହୋଇ ରହିଥିବ ମଧ୍ୟ । ତ୍ୟାଗୀ ଗୋପବନ୍ଧୁ ଦେଶସେବାରେ ଶେଷନିଶ୍ୱାସ ପର୍ଯ୍ୟନ୍ତ ଯେପରି ଜୀବନ ନିଯୋଗ କରିଥିଲେ, ତାହାର ପଟାନ୍ତର ନାହିଁ । ବୈଦେଶିକ ପିଶାଚ-ଶାସନର ତୀବ୍ର ତାଡ଼ନା, କଠୋର କାରାଦଣ୍ଡ ଓ ଅବାରିତ ନିର୍ଯ୍ୟାତନା ତାଙ୍କ କର୍ମନିଷ୍ଠ ଜୀବନକୁ ପ୍ରତିହତ କରିପାରି ନାହିଁ କିମ୍ବା ତାଙ୍କର ବୀର-ମନୋବୃତ୍ତି, ଉଦ୍ୟମଶୀଳତା, ଦେଶପ୍ରେମ ଓ ଅତୁଳସାହସିକତା ନିକଟରେ ନିଜର କାଳ ଭୈରବମୂର୍ତ୍ତି ଦେଖାଇ ପାରି ନାହିଁ । ଦୁଃଶାସନ ବରଂ ତାଙ୍କୁ ବାରମ୍ବାର ଦଣ୍ଡିତ ନିକ୍ଷେପିତ କରି ମଧ୍ୟ ତାଙ୍କର ନିତ୍ୟବିପ୍ଳବୀ ସାଧକ ଜୀବନ ନିକଟରେ ସ୍ୱତଃ ଅବନତ ହୋଇ ପଡ଼ିଛି ଓ ତାହାର ସର୍ବପ୍ରକାର ଖଳଚେଷ୍ଟା ବ୍ୟର୍ଥ ହୋଇଛି ।

ପଥପ୍ରଦର୍ଶକଭାବରେ ଗୋପବନ୍ଧୁ ଖାଲି ଉତ୍କଳର କାହିଁକି ସମଗ୍ର ଭାରତର ଚିରନମସ୍ୟ । ତାଙ୍କର କର୍ମପ୍ରେରଣା ବିଷମ ସଙ୍କଟମୟ ଜଟିଳ ପରିସ୍ଥିତିରେ ଦୁର୍ଗତ ଦଳିତ ଜାତି ପିଣ୍ଡରେ ସଞ୍ଚାର କରିପାରିଛି ଅପୂର୍ବ ମୃତ୍ୟୁସଞ୍ଜିବନୀ-ସୁଧାର ଅବାରିତ ଧାରା । ତାଙ୍କ ମହୋତ୍ତୁଙ୍ଗ କର୍ମପ୍ରାଣର ବୀରଗୀତି ବିଦୀର୍ଣ୍ଣ-ଜାତିର ଜୀବନରେ ଅଲୌକିକ ପ୍ରେରଣା ଦେବା ଫଳରେ ସାରା ଜନ୍ମଭୂମି ସେଇ ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ମହା-ଲକ୍ଷ୍ୟ ପଥରେ ଧାବମାନ ହୋଇ ପାରିଛି ଅପରିସୀମ ସାହସରେ । ଆର୍ଯ୍ୟର ଜୀବନ ଚିରନ୍ତନ ବୀର୍ଯ୍ୟମୟ ଏବଂ ଦୁଃଖଦୈନ୍ୟ ଯେତେ ସୀମାତୀତ ହେଉ ପଛେ, ତାହା କର୍ମବୀରକୁ କଦାପି ହୀନପ୍ରଭ କରି ନ ପାରେ । "ଧୀରସ୍ୟ ହି ଶିରଶ୍ଛେଦେ, ବୀରତ୍ୱଂ ନୈବ ମୁଞ୍ଚତି' —ଏହି ମହାବାଣୀ ତାଙ୍କ କର୍ମପଥରେ ମହତ୍ତମ ପାଥେୟ ହୋଇଛି । ଧୀରତ୍ୱ ଓ ବୀରତ୍ୱ ଦୁଇଟିର

ଅପୂର୍ବ ସମାବେଶ ହୋଇଥିଲା ତାଙ୍କର ଜୀବନରେ । ଜାତିର ଶିକ୍ଷକ, ସମୀକ୍ଷକ ଓ ସଂସ୍କାରକରୂପେ ଅବତୀର୍ଣ୍ଣ ହୋଇ ସେ କଠୋର ଜୀବନ-ସଂଗ୍ରାମକ୍ଷେତ୍ରରେ ସହସ୍ର ରଣଦୁନ୍ଦୁଭି ନିର୍ଘୋଷରେ ଆହ୍ୱାନ କରିଅଛନ୍ତି ସମଗ୍ର ଜାତିକୁ । ତାଙ୍କ ଉତ୍ତେଜନାମୟ ବଚନରେ ଗଗନ-ପବନ ବିଦୀର୍ଣ୍ଣ ହୋଇ ପଡୁଛି ଏବଂ ଦୁଃଶାସନର ଆସନ ଟଳମଳ ହୋଇଯାଇଛି । ଶତ ଶତ ସଭାସମିତିରେ ଭାଷଣ ଦେଲାବେଳେ ତାଙ୍କ ଧୀର ଗମ୍ଭୀର ଉନ୍ମାଦନାମୟ ବଚନବନ୍ୟାରେ ସୁପ୍ତ, ଅଭିଶପ୍ତ, ବିଦଳିତ ଜାତିକୁ ଅକୃତ୍ରିମ ବୀରରସରେ ରସାଣିତ କରିଛି ଏବଂ ମୁକ୍ତିପଥର ପଥିକା ହେବାଲାଗି ସମଗ୍ର ଜାତୀୟ ଜୀବନକୁ ସୈନିକରଭାବରେ ଉତ୍ତେଜିତ କରିଛି । ତାଙ୍କର ଦିବ୍ୟ ଲେଖନୀ ସଞ୍ଚାଳିତ ହୋଇଛି ମୁଖ୍ୟତଃ ସେଇ ଦିଗରେ । ଦେଶପ୍ରେମିକତାର ଚରମ ବିକାଶ ସଙ୍ଗେ ଧୈର୍ଯ୍ୟଚାଳକ ଭାବରେ ପଦକ୍ଷେପ କରିଛି ତାଙ୍କର ଆଧ୍ୟାତ୍ମିକ ଜୀବନର ମହନୀୟତା, ସାଧନାନିଷ୍ଠ ଶୁଦ୍ଧ ସିଦ୍ଧ ହୃଦୟର ନୈସର୍ଗିକ ଧାର୍ମିକତା ଏବଂ ସର୍ବାଙ୍ଗୀନ ସୁଖ ସମୃଦ୍ଧି ସଂସ୍କାର ଆନୟନରେ ଅସାଧାରଣ ଅଧ୍ୟବସାୟ । ତାଙ୍କର ଭାଷଣ, ଅଭିଭାଷଣ ତଥା କାବ୍ୟକବିତାର ଧାରା ଏହି ଭାବରେ ପରିପୁଷ୍ଟ, ଏହି ରସରେ ରସାଣିତ ଏବଂ ଏହିପ୍ରକାର ପରିକଳ୍ପନାରେ ପୂର୍ଣ୍ଣ ବିକଶିତ । ଘଟନାର ସଙ୍କଟମୟତାରେ ମଧ୍ୟ ଦେଶଲାଗି କାରାଦଣ୍ଡ ବରଣ କରି ଜୀବନକୁ ସର୍ବାଧିକ ଗୌରବାନ୍ୱିତ କରିଅଛନ୍ତି ଏବଂ ଶାନ୍ତି, ସଂସ୍କାର ଓ ଶୃଙ୍ଖଳା ମନୁଷ୍ୟକୁ, ଶାସକକୁ ତଥା ସମଗ୍ର ଜାତିକୁ ବାସ୍ତବ ଭବ୍ୟ ସଭ୍ୟତାର ପଥରେ ପଥିକ କରୁ—ଏଥିଲାଗି ବିଶ୍ୱପତିଙ୍କ ନିକଟରେ ଧାର୍ମିକ ବିପ୍ଳବୀଭାବରେ ଆତ୍ମନିବେଦନ କରିଅଛନ୍ତି । ଦେଶବାସୀଙ୍କୁ ଉଦ୍‌ବୋଧିତ କରି ବନ୍ଦୀଭାବରେ 'ବନ୍ଦୀର ଆତ୍ମକଥା'ରେ ପ୍ରେରଣା ଦେଇ ଡାକିଛନ୍ତି ସେ—

"ଦେଶବାସୀ ବନ୍ଧୁ, ଆତ୍ମୀୟ ସୋଦର
କାରାଦଣ୍ଡେ ମୋର ହେଲ କି କାତର ?
ଥିଲ ଏହା ଆଗୁଁ ଜଣାଶୁଣା କଥା,
ସେଥିପାଇଁ ତେବେ କିମ୍ପା ମନବ୍ୟଥା ?
କାତରତା ସିନା କାପୁରୁଷପଣ,
ବୀର ମାରେ, ଅବା ମରେ କରି ରଣ ।

ପଚ୍ଛଘୁଞ୍ଚା ନାହିଁ ଶରୀର ଜାତକେ,
ନ ମରେ ସେ କେଭେଁ ପରାଣ ଆତଙ୍କେ ।
× × ×
ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ;
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା-ପଥେ ତଳେ ହେଲେ ନର
ମୋ ଜୀବନଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ, ଏହି ଶେଷ ଭିକ୍ଷା ।"

ଦେଶ ଓ ଜାତିର ପରିସ୍ଥିତି ସମୀକ୍ଷା କରି ଯୁଗୋଚିତ ମାନବୋଚିତ ସଂସ୍କାରବିଧାନ ଲାଗି ତାଙ୍କ ବିପ୍ଳବୀ ପ୍ରାଣ ଅଧିକ ବ୍ୟାକୁଳ ହୋଇଉଠିଛି । ସତ୍‌କର୍ମ, ସତ୍‌ଶିକ୍ଷା, ସତ୍‌ସଙ୍ଗ, ସତ୍‌କଳ୍ପନା, ସଦ୍‌ଦୃଷ୍ଟି, ସତ୍‌ଚେଷ୍ଟା ଓ ସଦ୍‌ବିନିଯୋଗହିଁ ଜୀବନଗଠନର ଯୁଗେ ଯୁଗେ ସହାୟକ । ଏହିଗୁଡ଼ିକର ହିଁ ଆର୍ଯ୍ୟର ଆଧ୍ୟାତ୍ମିକ ଜୀବନପଦ୍ଧତିର ସର୍ବଥା ଅନୁକୂଳ । ଏହିଗୁଡ଼ିକ ବଳରେ ପୂର୍ଣ୍ଣାଙ୍ଗ ବିକାଶ ସମ୍ଭବପର ଏବଂ ଏହାର ସମାବେଶହିଁ ଧର୍ମ । ଗୋପବନ୍ଧୁ ଚିନ୍ତାଶୀଳ ପର୍ଯ୍ୟବେକ୍ଷକଭାବରେ ଦେଶ ଓ ଜାତିର, ବିଶେଷତଃ ତଦାନୀନ୍ତନ ଦରିଦ୍ର ଉତ୍କଳର ଶୋଚନୀୟ ଅବସ୍ଥା ସମ୍ୟକ୍ ଉପଲବ୍‌ଧି କରି ସଂଶୋଧନର ପନ୍ଥା ଅନ୍ୱେଷଣ କରିଅଛନ୍ତି ଗଭୀର ସନ୍ଧାନୀରୂପେ । ତାଙ୍କର ଉଦ୍ୟମ କେବଳ ଅନ୍ୱେଷଣରେ ପର୍ଯ୍ୟବସିତ ନ ହୋଇ ଦୁର୍ଦ୍ଦଶାଗ୍ରସ୍ତ ବିରାଟ ଜାତିର ରହସ୍ୟମୟ ନିଗୂଢ଼ ସତ୍ୟଗୁଡ଼ିକ ସ୍ପଷ୍ଟ ଲକ୍ଷ୍ୟ କରିପାରିଛି ଏବଂ ତାଙ୍କ ପ୍ରତିଭା, ପାଣ୍ଡିତ୍ୟ, କବିତ୍ୱ, ଦିବ୍ୟଦର୍ଶନ, କର୍ମଯୋଜନା ସବୁ କିଛି ନିୟୋଜିତ ହୋଇଛି କେବଳ ଏହି ଦିଗରେ । ଚିନ୍ତାଶୀଳ ଲେଖକ, ସାହିତ୍ୟିକ ତଥା କବିଭାବରେ ପ୍ରଶସ୍ତି ଲାଭ କରିବାକୁ ତାଙ୍କର ମୁହୂର୍ତ୍ତିକ ଲାଗି ସୁଦ୍ଧା ଚେଷ୍ଟା ଲକ୍ଷିତ ହୋଇ ନାହିଁ; ତଥାପି ଦେଶର, ଜାତିର ତଥା ତଦାନୀନ୍ତନ ଉତ୍କଳର ପୁରପଲ୍ଲୀ-ଜୀବନର ନୈରାଶ୍ୟ ନିର୍ଯ୍ୟାତନା— ହାହାକାରମୟ ଚିତ୍ରର ବାସ୍ତବତା ତାଙ୍କ ଗଭୀର ଅନୁଭୂତିବଳରେ ଏତେ

ପ୍ରାଞ୍ଜଳଭାବରେ ଚର୍ଚ୍ଚିତ ହୋଇଛି ଯେ, ତାହା ଖାଲି ଉତ୍କଳର କାହିଁକି, ସମଗ୍ର ଭାରତୀୟ ଉଚ୍ଚକୋଟୀର କବିମାନଙ୍କର ପରିକଳ୍ପନାଠାରୁ କୌଣସି ଅଂଶରେ ନ୍ୟୂନ ବୋଲି ବିବେଚିତ ହୋଇ ନ ପାରେ । ବସ୍ତୁତଃ ତାଙ୍କ ଅମର ଲେଖନୀ ଗଭୀର ଅନୁଭୂତିମୟ ପ୍ରାଣକନ୍ଦର ନିଃସୃତ ଭାଷା ନିଃସ୍ୟନ୍ଦନୀକୁ ବହିର୍ଜଗତକୁ ଆନୟନ କରିଛି ଅପୂର୍ବ ରଙ୍ଗରେ ରଞ୍ଜିତ କରି ଏବଂ ଅତୁଳନୀୟଭାବରେ ଭାବାବିଷ୍ଟ କରି । ଏକ ଦିଗରେ ତାଙ୍କ ଶିକ୍ଷା, ସଂସ୍କାର, ପ୍ରତିଭା ଓ ଯୋଜନାଶକ୍ତି ଏବଂ ଏଗୁଡ଼ିକର ସହଯୋଗୀ ହୋଇ ଅନ୍ୟ ଦିଗରେ ତାଙ୍କ ଦିବ୍ୟଦର୍ଶନ, ଦେଶପ୍ରାଣତା, ଅନୁଭୂତି ଓ ଅଦମ୍ୟ ସାଧନାନିଷ୍ଠା ତାଙ୍କୁ ଏକାଧାରରେ କରିପାରିଛି ସାଧକ, ଶିକ୍ଷକ, ଶାସକ, ସଂସ୍କାରକ, କବି, ଧର୍ମବୀର ଓ କର୍ମବୀର । ପ୍ରତିମୁହୂର୍ତ୍ତରେ ସେ ଜାତିର ଦୁର୍ଦ୍ଦଶା ଅବଲୋକନ କରିଅଛନ୍ତି ଏବଂ ନିର୍ଜୀବ, ନିଷ୍ପନ୍ଦ, ନିଶ୍ଚଳ ଦର୍ଶକ-ଭାବରେ ଜଡ଼ବତ୍ ଦଣ୍ଡାୟମାନ ନ ହୋଇ ସେ ପ୍ରତିକାରର ପନ୍ଥା ଆବିଷ୍କାରପୂର୍ବକ ଜାତିର ଦୁରନ୍ତ ଦୁର୍ଗମ ଦୁର୍ଗତିମୋଚନଲାଗି ଉଦ୍ୟମ କରିଅଛନ୍ତି ଅପ୍ରତିହତଭାବରେ । ଅଟଳ ମନୋବଳରେ ବଳୀୟାନ୍ ସେ ଏବଂ ଅପରିସୀମ ଈଶ୍ୱର ବିଶ୍ୱାସ ହିଁ ତାଙ୍କ ସାଧକ-ଜୀବନର ଏକମାତ୍ର ମାନଦଣ୍ଡ । ଆତ୍ମବଳ, ସଂଯମ, ସଦାଚାର ଓ ସଦୁଦ୍ୟମପୁଷ୍ଟ ସହଯୋଗ ବଳରେ ଅସାଧ୍ୟ ସାଧନ ସମ୍ଭବପର—ଏହା ହିଁ ତାଙ୍କର ଏ ଜାତିକୁ ନିତ୍ୟ ପ୍ରେରଣା ପ୍ରଦାନ କରିଅଛି ।

ଦେଶ-ଦଶାର ଦୁର୍ଗତି ଲକ୍ଷ୍ୟ କରି ସେ କଦାପି ନୈରାଶ୍ୟଜର୍ଜର ହୋଇ ନାହାନ୍ତି । ତାଙ୍କ ସାଧକଜୀବନରେ ଆଡ଼ମ୍ବର, ଶଠତା, ବଞ୍ଚନା ଓ ଆତ୍ମବଡ଼ିମା କ୍ଷଣକଲାଗି ଲକ୍ଷିତ ହୋଇ ନାହିଁ । କର୍ମବୀର ସାଧନନିଷ୍ଠ ଜୀବନ ହିଁ ଚରମ ସନ୍ନ୍ୟାସର ପ୍ରତୀକ । ଆଟୋପମୟ ଭାଷଣ ଦେଇ କିମ୍ବା ନୈରାଶ୍ୟଜର୍ଜର ଜାତିକୁ ଶୁଷ୍କ ନିରର୍ଥକ ଆଶ୍ୱାସ ଦେଇ ଆତ୍ମପ୍ରସାଦ ଲାଭ କରିବା ତାଙ୍କ କର୍ମଜଗତର ସମ୍ପୂର୍ଣ୍ଣ ବହିର୍ଭୂତ । ଯଥାସମୟରେ ତାଙ୍କର ଦିବ୍ୟଦ୍ରଷ୍ଟାରୂପେ ମହାମାନବ ଗାନ୍ଧି ସ୍ୱକୀୟ ମହାଭାବରେ ତାଙ୍କୁ ପ୍ରଣୋଦିତ କରିବା ଫଳରେ ତାଙ୍କ ସାଧକ-ଜୀବନପଦ୍ଧତି ଅଧିକ ସରସ ଓ ସୁନ୍ଦର ହୋଇ ପାରିଥିଲା । ମହାତ୍ମା ଗାନ୍ଧିଙ୍କ ଆତ୍ମନିୟୋଗ ଓ ସୁଚିନ୍ତିତ, ସୁନିୟନ୍ତ୍ରିତ ବିପ୍ଳବ ଗୋପବନ୍ଧୁଙ୍କୁ ଅଧିକ ଅନୁପ୍ରାଣିତ କରି-ଥିବାର ସେ ନିଜେ ମଧ୍ୟ ଉଲ୍ଲେଖ କରିଅଛନ୍ତି —

"ଅସହଯୋଗର ପବିତ୍ର ସରିତ
ଉତ୍କଳର ବକ୍ଷେ ହେଲା ପ୍ରବାହିତ ।
ଗାନ୍ଧି-ଭଗୀରଥ ନିଜ ପୁଣ୍ୟବଳେ
ଆଣିଲେ 'ଅସହ'-ଜାହ୍ନବୀ ଉତ୍କଳେ ।
ହିମାଚଳଠାରୁ ସୀମାଚଳ ଧରି
କୁମାରିକାଯାଏ ଖେଳିଲା ଲହରୀ
ଉତ୍କଳେ ସେ ପୁଣ୍ୟସ୍ରୋତ ଶତଧାରେ
ବହେ ପୁରପଲ୍ଲୀ, ପ୍ରାନ୍ତର କାନ୍ତାରେ ।
ଉତ୍କଳେ 'ଅସଙ୍ଗ'-ପ୍ରବାହେ ଭାସିତ
ବାହୁଛନ୍ତି ଯେତୁ ସ୍ୱରାଜ୍ୟ-ବୋଇତ ।
ସେ ଦଳରେ ମୁହିଁ ଅକିଞ୍ଚନ ଜଣେ
ମୋଡ଼ିଥିଲି ନାବ-ମଙ୍ଗ ପ୍ରାଣପଣେ ।
× × ×
ଉତ୍କଳନିବାସୀ ଏ ଦଶା ଦେଖିଣ
ନିବାଣରେ ବଳ କରି କହେ କ୍ଷୀଣ ?
କରି କି ଭାବନା କାଣ୍ଡାରି ବିହୁନେ
ଚାଲିବ ସ୍ୱରାଜ୍ୟ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ,
ଧର୍ମନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରପ୍ତ ଜନ
ଉତ୍କଳର ନେତା ନିଜେ ନାରାୟଣ ।"

ଏବଂ ବାସ୍ତବ ଅବସ୍ଥା ପର୍ଯ୍ୟବେକ୍ଷଣ କରିବା ପରେ କବିବର ରାଧାନାଥଙ୍କ ପରି ଗମ୍ଭୀର ନୈରାଶ୍ୟବାଦର ଆଲେଖ୍ୟ ପ୍ରକଟନ କରିବା ପରିବର୍ତ୍ତେ ସେ ଦେଇଛନ୍ତି ମର୍ମାହତ ପ୍ରାଣରେ ଆଶା ଓ ଆଶ୍ୱାସନା । ଯେ ଆଧ୍ୟାତ୍ମିକ-ବଳରେ ବଳଶାଳୀ ଓ ଭଗବତ୍-ବିଶ୍ୱାସରେ ପ୍ରତିନିଶ୍ୱାସରେ ପ୍ରବୁଦ୍ଧ ହୋଇ ଉଠେ, ଶୋଚନାମୟ ପରିସ୍ଥିତି କିମ୍ବା ବିଭୀଷିକାମୟ ଘଟଣାବଳୀ ମଧ୍ୟରେ ତାହାର ଜୀବନ ଅଟଳ ଏବଂ ନିର୍ଭୀକ ବୀରରସରେ ତାହାର ଅନ୍ତର ଅନୁପ୍ରାଣିତ ହେବା ସ୍ୱାଭାବିକ । ଶୋଚନାମୟ ଦାରୁଣଚିତ୍ର ନିଜେ ଲକ୍ଷ୍ୟ କରି ସମଗ୍ର ଜାତି ତାହା ଉପରେ ହୃଦୟଙ୍ଗମ କରୁ ଏବଂ ପ୍ରତିକାରଲାଗି ବ୍ରତୀ

ବ୍ୟବସ୍ଥା କରିନେଉ, ଏଥିଲାଗି ତାଙ୍କ ମନ୍ଦ୍ ମନ୍ତ୍ରୀର ନିର୍ଦ୍ଦୋଷ କହିବାର ଛଳେ ଛଳେ ରୂପ ରେଖ ପାଇଛି । ବାକ୍ୟବୀର ହୋଇ କର୍ମବିମୁଖ ହେବାଠାରୁ ବଳି ଗୁରୁତର ଅପରାଧ ଆଉ କିଛି ନାହିଁ ଏବଂ ଅବସ୍ଥା ଲକ୍ଷ୍ୟ କରି ସୁଦ୍ଧା ନିଶ୍ଚେଷ୍ଟ ହୋଇ ସଂସାରବିମୁଖ ହେବାଠାରୁ ବଳି ଅଧିକ ନିନ୍ଦନୀୟ ପରିସ୍ଥିତି ଭଗବତ୍‌ସୃଷ୍ଟିରେ ସମ୍ଭବ ହୋଇ ନ ପାରେ । ବିଧାତାର ନିର୍ଦ୍ଦେଶ, ଅଭୟ, ଆଶୀର୍ବାଦ ସବୁକିଛି ରୂପଧାରଣ କରେ କଠୋର କର୍ତ୍ତବ୍ୟନିଷ୍ଠ ଜୀବନର ପ୍ରତିସ୍ତରରେ । ଯେଉଁଠି ସଦ୍‌ବୁଦ୍ଧି, ବିବେକ, କର୍ମନିଷ୍ଠା, ସତ୍‌ପ୍ରେମ ଓ ଆତ୍ମବିଶ୍ୱାସ ବଳବତ୍ତର ହୋଇଉଠେ, ସେଇଠାରେ ହିଁ ଭଗବାନ୍ ମୂର୍ତ୍ତି ହୋଇ ଅବତୀର୍ଣ୍ଣ ହେବାକୁ ବାଧ ହୁଅନ୍ତି । ଯେଉଁଠି ପିଶାଚର ଅଖଣ୍ଡ ରାଜତ୍ୱ, ଧର୍ମର ଗ୍ଲାନି, ସାଧନାନିଷ୍ଠ ଜୀବନର ଅପଳାପ, ସତ୍ୟର ଅଧଃପତନ, ସେବାର ଲାଞ୍ଛନା, ତ୍ୟାଗର ଅପବାଦ, ଶୌର୍ଯ୍ୟର ହ୍ରାସ ଓ ଶାନ୍ତିଶୃଙ୍ଖଳାର ବିନାଶ ଜାତୀୟ ଜୀବନ-ପ୍ରବାହକୁ କଳୁଷିତ କରିଦିଏ, ସେଇଠାରେ ହିଁ ଯୁଗୋଚିତ ବିପ୍ଳବ ହୋଇଉଠେ ମଙ୍ଗଳମୟଙ୍କ ନିର୍ଦ୍ଦିଷ୍ଟ ଇଚ୍ଛାରେ । ଧର୍ମାଧର୍ମ, ସତ୍ୟାସତ୍ୟ କର୍ମାକର୍ମ, ଆତ୍ମର ଅନାତ୍ମର ମଧ୍ୟରେ ସଂଘର୍ଷ ଲାଗିରହିବା ତ ସୃଷ୍ଟିର ରହସ୍ୟ । ଏହି ଗୂଢ଼ ରହସ୍ୟ ଭିତରେ ହିଁ ସ୍ରଷ୍ଟାର ସୃଷ୍ଟିତତ୍ତ୍ୱ ନିହିତ । ଦୁଃଶାସନ ଦୁର୍ନୀତି ମଧ୍ୟରେ ସୁଶାସନ ସୁନୀତିର ପନ୍ଥା ସନ୍ଧାନ କରିନେବା ଲାଗି ଯୁଗେଯୁଗେ ଭଗବାନ୍ ବିପ୍ଳବୀ ସାଧନନିଷ୍ଠ କର୍ମବୀରଙ୍କୁ ପ୍ରେରଣା ଦେଇଥାନ୍ତି । "ସୁ" ଓ 'କୁ' ଦୁଇଟିର ସମାବେଶ ବିଧାତାର ବିଧାନନିହିତ; ମାତ୍ର ତାଙ୍କ ଇଚ୍ଛାରେ ଗୋଟିକର ଉତ୍କର୍ଷ ପ୍ରତିପାଦନ-ପୂର୍ବକ ଧର୍ମ-ସତ୍ୟ-ପ୍ରେମ-ନିଷ୍ଠାଦିର ମହତ୍ତ୍ୱ ରକ୍ଷାକରିବା ଯେପରି ଆବଶ୍ୟକ, ଅନ୍ୟଟିର ଅପକର୍ଷ ପ୍ରତିପାଦନପୂର୍ବକ ଦୁର୍ନୀତି, ଦୁରାଗ୍ରହର ପ୍ରବୃତ୍ତିର ତୁରନ୍ତ ପ୍ରତିକାର କରିବା ସେହିପରି ବିଧେୟ । ଏହି ଉତ୍କର୍ଷାପକର୍ଷ ବିବେଚନା କରି ଭଗବତ୍ ଇଚ୍ଛାକୁ କର୍ମଜୀବନରେ ଚରିତାର୍ଥ କରିବା ହିଁ ମନୁଷ୍ୟର ବିବେକାନୁମୋଦିତ ଧର୍ମ । ଅପକର୍ଷବିଧାୟକ ସାମଗ୍ରୀଗୁଡ଼ିକୁ ନିର୍ମୂଳ କରିଦେବା ଶକ୍ତି ମନୁଷ୍ୟଠାରେ ନାହିଁ ଏବଂ ଯୁଗାବତାରମାନେ ଅପକର୍ଷମୂଳକ ସାମଗ୍ରୀଗୁଡ଼ିକୁ ଚିହ୍ନାଇ ଦେଇ ମାନବଜାତିକୁ ସାବଧାନ କରି ଆସୁଥିଲେ ସୁଦ୍ଧା ତାହାର ମୂଳୋତ୍ପାଟନ କରିପାରି ନାହାନ୍ତି । ମୂଳୋତ୍ପାଟନ ମଧ୍ୟ ବିଧାତାର ନିର୍ଦ୍ଦେଶ ନୁହେଁ ।

ତଥାପି ବୁଦ୍ଧିମାନ ବିବେକୀ ମନୁଷ୍ୟ ଜାଗରୂକ ହୋଇ ସତ୍ୟାସତ୍ୟ ବିବେଚନା କରିବା ଲାଗି ସାଧନକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ମହର ମହତ୍ତ୍ୱ ଦେଖି ଦେଖାଇଦେଇ ମହତ୍ ବା ମଙ୍ଗଳକର ସାମଗ୍ରୀଗୁଡ଼ିକର ଆଶ୍ରୟ ନେବା ଲାଗି ଯୁଗୋଚିତ ଭାବରେ ନିର୍ଦ୍ଦେଶ ଦେଇବସେ । ସେ ତେଣୁ ପରମ ନିର୍ଦ୍ଦେଶଦାତାଙ୍କଠାରୁ ନିର୍ଦ୍ଦେଶ ଆଣି ତାକୁ ହିଁ ସର୍ବକଲ୍ୟାଣ କଳ୍ପେ ଜୀବନ-ସଂଗ୍ରାମରେ ଚରିତାର୍ଥ କରିବା ଏକାନ୍ତ ବାଞ୍ଛନୀୟ । ଦେଶବନ୍ଧୁ, ଦୀନବନ୍ଧୁ, ପତିତବନ୍ଧୁ, ଗୋପବନ୍ଧୁ ଏହି ନିର୍ଦ୍ଦେଶରେ ବଳୀୟାନ । ନିଜକୁ ସୃଷ୍ଟିଲୀଳାରେ ନଗଣ୍ୟ ଅକିଞ୍ଚନ ନିମିତ୍ତମାତ୍ର ମନେ କରୁଥିଲେ ମଧ୍ୟ ସେ ମହାଭାବରେ ଅନୁଭାବିତ, ମହାପ୍ରେରଣାରେ ଅନୁପ୍ରାଣିତ ଓ ମହାବିଶ୍ୱାସ ବଳରେ ପରିଚାଳିତ—ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଜାତିର ପୂର୍ବାବସ୍ଥା ଓ ତଦାନୀନ୍ତନ ଦୁରବସ୍ଥାର ତୁଳନାତ୍ମକ ଚିତ୍ର ଦେଇ ଯଥାବିହିତ ସଂସ୍କାର ବିଧାନ ଲାଗି ତାଙ୍କର ଆଶ୍ୱାସନାପୂର୍ଣ୍ଣ ପ୍ରାଣଚଳନୀ ଉତ୍କଳ ମୂର୍ଚ୍ଛନା ତୋଳି ଉଠିଛି—

× × × ×

"ଏବେ ସୁଦ୍ଧା ଦେଖ ନୀଳାଚଳେ ଯାଇ
କଳା ଧଳା ଘୋଡାପରେ ବେନି ଭାଇ,
ବୀରମୂର୍ତ୍ତି ଦିଶେ ଯେହ୍ନେ ଅଗ୍ନିଶିଖା,
ଦଧି ମୂଲ୍ୟ ମାଗେ ସମ୍ମୁଖରେ ମାଣିକା ।
ଏ ଛବି ତ ନୁହେ ଶିଳ୍ପୀର କଳ୍ପନା,
ଏ ସତ୍ୟର ସାକ୍ଷୀ ମାଣିକପାଟଣା ।

× × × ×

ଏବେ ନୀଳାଚଳେ ବିଜେ ଜଗନ୍ନାଥ,
ତେବେ କିମ୍ପା କହ, ଉତ୍କଳ ଅନାଥ ?
ନାହିଁ ପୂର୍ବବଳ, ନାହିଁ ପୂର୍ବଧର୍ମ,
ନାହିଁ ପୂର୍ବସତ୍ୟ, ନାହିଁ ପୂର୍ବକର୍ମ ।
ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ କି ହେ ନୀଳାଚଳପତି !
ମାତ୍ର ବୁଝି ଭାଇ ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।

କ୍ଷୀଣ ହେଲେ କେବେ ଧାର୍ମିକ ଶକତି
ଆସନ୍ତି ଓହ୍ଲାଇ ପ୍ରଭୁ ବିଶ୍ୱପତି ।
ନିତ୍ୟଧାମୁଁ ଗୁଢ଼ ରତ୍ନସିଂହାସନ
କରିବାକୁ ଧର୍ମପକ୍ଷ ସମର୍ଥନ ।
ଏ ବିଶ୍ୱାସେ ମନ ଦୃଢ଼କର ଭାଇ,
ନେତାର ଅଭାବ ଲାଗି ଭାବ ନାହିଁ ।
କର୍ମଭୂମେ କିଏ ନେତା କେବା ମିତ;
ସରବେ ନିମିତ୍ତ ବିଧି ନିୟୋଜିତ ।"

ଜାତିର ଦୁଦ୍ଦଶାଗ୍ରସ୍ତ ଜୀବନର ନିଖୁଣ ଚିତ୍ର ଗୋପବନ୍ଧୁଙ୍କ ଲେଖାମାନେ ଯେତେ ପୂର୍ଣ୍ଣାଙ୍ଗ, ପ୍ରାଞ୍ଜଳ, ଚଟୁଳ ଓ ଚମତ୍କାର ହୋଇଛି, ଉତ୍କଳର କୌଣସି କବି ସେଭଳି ସରସ, ସୁନ୍ଦର, ଚିତ୍ତାକର୍ଷକ ଆଲେଖ୍ୟ ପ୍ରକଟନ କରିପାରି ନାହାନ୍ତି । ଦୁଃଶାସନର ଏକ ପକ୍ଷରେ ପ୍ରାଣାନ୍ତକ ତାଡ଼ନା ଏବଂ ଅନ୍ୟ ପକ୍ଷରେ ଦେଶବାସୀଙ୍କର ଆଳସ୍ୟ, ଶୈଥିଲ୍ୟ, କୁଶିକ୍ଷା, ପରାଧୀନ ମନୋବୃତ୍ତି ଓ ଅସତ୍ ପନ୍ଥାନୁସରଣ ଯୋଗେ ଦାରୁଣ ଦୁର୍ଗତିର ଅପରିହାର୍ଯ୍ୟ ସଜଗ । ଏକ ପକ୍ଷରେ ଶାସକବର୍ଗଙ୍କର ଶୋଷଣପ୍ରିୟ ମତି ଏବଂ ଅନ୍ୟ ପକ୍ଷରେ ପରାବଲମ୍ବନଶୀଳ ଅନୁଦ୍ୟମୀ ଜୀବନର କୁଦ୍ଧିସ୍ଥାଜନିତ କୁତ୍ସିତ ଗତି । ପ୍ରତ୍ୟେକଟିର ନିଖୁଣ ଚିତ୍ର 'ବନ୍ଦୀର ଆତ୍ମକଥା', 'କାରାକବିତା' ପ୍ରଭୃତିରେ ଅସାଧାରଣ ଶୈଳୀରେ ରୂପରେଖ ପାଇଛି । ଦିବ୍ୟଦର୍ଶୀ କବି ଗୋପବନ୍ଧୁ ସତେ ଯେପରି ପ୍ରାଣେ ପ୍ରାଣେ ଉପଲବ୍ଧି କରିଅଛନ୍ତି ଯେ, ସାଧକ ବା କର୍ମବୀର ବା କବି ବା ସଂସ୍କାରକ—କାହାରି ଜୀବନ ଜାତୀୟ ଜୀବନ ପରମ୍ପରାରୁ ବିଚ୍ୟୁତ ନୁହେଁ ଏବଂ ଜାତୀୟ ମନୋବୃତ୍ତି, ଜାତୀୟ କର୍ମପଦ୍ଧତି, ଜାତୀୟ ସଂସ୍ଥା ଭିତରୁ କଦାପି ବିଚ୍ଛିନ୍ନ ହୋଇ ନ ପାରେ । ସାଧକ ଯେତେ ଉଚ୍ଚ ସ୍ତରରେ ସଞ୍ଚରଣ କରି ଭାଗ୍ୟଦେବୀଙ୍କ ଆଶିଷ ଆନୁକୂଲ୍ୟ ଯେତେ ପରିମାଣରେ ଭୋଗକରୁ ପଛକେ, କବି ବା ଦାର୍ଶନିକ ଯେତେ ମହତ୍ତମ ଚିନ୍ତାଧାରାରେ ନିଜକୁ ଭସାଇ ରସାଇ ମଜ୍ଜାଇ ହଜାଇ ଦେଉ ପଛକେ, ସେ ଯେ ଜାତି, ସମାଜ, ଦେଶ ସଙ୍ଗେ ଐକତାନିକ ଭାବରେ ଜୀବନ ସଙ୍ଗୀତ ଗାଇବାକୁ ବାଧ୍ୟ, ଜୀବଯାତ୍ରାରେ ସହଯୋଗ କରିବାକୁ ଅନୁପ୍ରାଣିତ ହେବା ସ୍ୱତଃସିଦ୍ଧ

ଏବଂ ସର୍ବାଙ୍ଗୀନ ଉନ୍ନତି ପ୍ରଗତି ବିଧାନକଳ୍ପେ ବଦ୍ଧପରିକର ହେବା ଏକାନ୍ତ ସ୍ୱାଭାବିକ, ଏ କଥା ଧ୍ରୁବନିଶ୍ଚିତ । ବସ୍ତୁତଃ ଯେଉଁ କବି ବା ସାଧକ ବା ଦାର୍ଶନିକର ଚିନ୍ତାଧାରା ଜାଣସ୍ୱ ଜୀବନସମ୍ବଳିତ ଚିନ୍ତାଧାରାରେ ଓତପ୍ରୋତଭାବରେ ଜଡ଼ିତ ହୋଇ ନାହିଁ, ପରିବର୍ତ୍ତିତ ପରିସ୍ଥିତିବହୁଳ ଘଟଣାବଳୀର ବାସ୍ତବ ଆଲେଖ୍ୟ ପ୍ରକଟନ କରିବାରେ ସମର୍ଥ ହୋଇ ନାହିଁ ଏବଂ ପ୍ରତିକାରମୂଳକ ଅନୁକୂଳ ବାୟୁମଣ୍ଡଳ ସନ୍ଧାନ କରି ପାରି ନାହିଁ ତାହାର ତଥାକଳ୍ପିତ ଚିନ୍ତାଧାରା ଯେତେ ମୂଲ୍ୟବାନ ହେଉ, ଅଳଙ୍କାର ଭାବରସାଦିର ପରିଶୀଳନରେ ଯେତେ ଚିତ୍ତାକର୍ଷକ ହେଉ କିମ୍ବା ଗଭୀର ଅର୍ଥବ୍ୟଞ୍ଜନାର ଜଟିଳ ଆଭରଣରେ ଯେତେ ଆବୃତ ହେଉନା କାହିଁକି ତାହା ଅତର୍କିତ ଭାବରେ ଖସିପଡ଼େ ସରସତାର ବହୁ ତଳକୁ ଅବସ୍ଥାବହୁଳ ଜୀବନ-ସଂଗ୍ରାମ ଲକ୍ଷ୍ୟ କରି ସୁଦ୍ଧା ତାହାର ଚିତ୍ରଣ ନ କରିପାରିବା ଫଳରେ ପ୍ରଗତିଶୀଳ ସାହିତ୍ୟ ବା ଉନ୍ନତ ଦର୍ଶନପଦ୍ଧତିରେ ଗତି କରି ନ ପାରି ଅଧମ ସ୍ତରକୁ ଆପେ ଆପେ ଚାଲିଯାଏ । ସୁଖର କଥା, ଗୋପବନ୍ଧୁ ଏ ଦିଗରେ ବଡ଼ ପ୍ରୟୋଗପାରଗ । ତାଙ୍କର ଯୁଗୋଚିତ ଚିନ୍ତାଧାରା ଯୁଗ ଓ ତାତ୍କାଳିକ ପରିସ୍ଥିତି ସଙ୍ଗେ ଏକ ପନ୍ଥାରେ ଗତି କରିପାରିଛି ଏବଂ ଜାତିର ଦୁରବସ୍ଥା, ଦୁର୍ଗତି ପ୍ରତ୍ୟେକଟିର କରୁଣ ଚିତ୍ର ଗଭୀର ଅନୁଭୂତି ବଳରେ ତାଙ୍କ କାବ୍ୟକବିତାରେ ଯଥୋଚିତ ସ୍ଥାନ ପାଇପାରିଛି । ଏତଦ୍‌ଭିନ୍ନ ତାଙ୍କ ଆଧ୍ୟାତ୍ମିକ ଚିନ୍ତାଧାରା, ଗଭୀର ଭଗବତ୍‌ପ୍ରେମ, ବ୍ରହ୍ମାଣ୍ଡନାଥ ଜଗନ୍ନାଥଙ୍କ ଅଭୟ ପ୍ରଦାନ, ସମାଜର ନିଖୁଣ ଚିତ୍ର, ପଲ୍ଲୀର ମର୍ମବିଦାରକ ଦୃଶ୍ୟାବଳୀ, ସ୍ୱାଧୀନତା-ସଂଗ୍ରାମରେ କର୍ମବୀରର ଅଦମ୍ୟ ଉଦ୍ୟମ ଓ ଦୁଃସାହସିକ ଅଗ୍ରଗତି, ସେବା, ତ୍ୟାଗ, ଧର୍ମ, ଆର୍ଯ୍ୟ ମନୋବୃତ୍ତି, ଆର୍ଯ୍ୟ ପରାକାଷ୍ଠା, ଜନ୍ମଭୂମିର ଅତୀତ ମହତ୍ତ୍ୱ—ସବୁଗୁଡ଼ିକ ସତେ ଯେପରି ଜୀବନ୍ତ ବେଶରେ ତଥା ଦେଦୀପ୍ୟମାନ ବିକାଶରେ ଆତ୍ମପ୍ରକାଶ କରିଅଛନ୍ତି । ଏହା ହିଁ ସେବକ, ତ୍ୟାଗୀ, ସାଧକ, ଅଧ୍ୟାତ୍ମବାଦୀ, ଆତ୍ମବଳୀ, ଈଶ୍ୱରବିଶ୍ୱାସୀ, ଦାର୍ଶନିକ କବି ଦରିଦ୍ରବନ୍ଧୁଙ୍କ ବାସ୍ତବ ପରିଚୟ ଦେଇଥାଏ । ଭାଗବତ, ଗୀତା, ପୁରାଣ, ବେଦ, ଉପନିଷଦ ପ୍ରଭୃତି ଆର୍ଯ୍ୟଭୂମିର ଧର୍ମଗ୍ରନ୍ଥଗୁଡ଼ିକ ତାଙ୍କ ଜୀବନକୁ ଯେତେ ପରିମାଣରେ ପ୍ରଭାବିତ କରିପାରିଅଛି, ସମଗ୍ର ଉତ୍କଳରେ ଅନ୍ୟ କାହାକୁ କୁହାପି ଏପରି କରିପାରି ନାହିଁ ।

ବାସ୍ତବବାଦୀ କବି, ଶିକ୍ଷକ, ସଂଶୋଧକ ଭାବରେ ସେ ପୁରପଲ୍ଲୀର ଅବସ୍ଥା ଲକ୍ଷ୍ୟ କରି କହିଅଛନ୍ତି—

"ଦେଖିଛୁ ଉତ୍କଳେ ଯେ ଦୃଶ୍ୟ ନୟନେ,
ଉଠଇ ତା ଭୂତ ପରାଏ ଶୟନେ ।
କେତେ କେତେ କୃଷୀ ଭଲଭଲ ଲୋକ
ନ ପାନ୍ତି ଦି'ବେଳା ପେଟପୂରା ତୋକ ।
ଥିଲେ ଯେହୁ ମଲ୍ଲ ଉତ୍କଳ ସୈନିକ,
ପାଇକପ୍ରଧାନ ମାଗୁଛନ୍ତି ଭିକ ।
ଦେହେ ନାହିଁ ମାଂସ, ଦୋହଲୁଚି କଣ୍ଠା,
ଅନାହାରେ ଆହା ନ ଉଠଇ ଅଣ୍ଟା ।
ଅର୍ଜନ୍ତି ଯା ଭୁଞ୍ଜେ ମାରି ମୁଣ୍ଡଖାଲ,
ଦୁଷ୍ଟ ମହାଜନ, ଗ୍ରାମ କଣ୍ଟାଆଳ,
ପ୍ରଜାରକ୍ତ ଶୋଷୀ କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ପାହାର ।
ଉଦର-ଜ୍ୱାଳାରେ କେତେ ନରନାରୀ
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାରି ।
ପଡ଼ିଅଛି ଉହ କାହିଁ ବା ଗୁଳିଆ,
ଶ୍ମଶାନ ପରାଏ ଦିଶେ ନିଗ୍ରଛିଆ ।
ପଶିଗଲେ ଗ୍ରାମେ ନ ଶୁଭେ ଶବଦ
ବେଦମନ୍ତ୍ର କିବା ଭାଗବତ ପଦ;
ଗ୍ରାମବାସୀଗଣେ ନାହିଁ ପୂର୍ବ ମେଳ,
ଶିଶୁ ଖେଳେ ଦାଣ୍ଡ ନ ହୁଏ ଉଦ୍‌ବେଳ ।
ନାହିଁ କାହା ମୁଖେ ସତ୍ୟଧର୍ମ କାନ୍ତି
ନାହିଁ ହୃଦେ ଶୌଚ, ପ୍ରାଣେ ସ୍ନେହ ଶାନ୍ତି ।

× × × ×

ପରେ ପରେ ଗଭୀର ଆଶାବିଶ୍ୱାସନିଷ୍ଠ ଦୂରଦର୍ଶୀ ଗୋପବନ୍ଧୁ ଦେଇଛନ୍ତି ସ୍ୱର୍ଗୀୟ ଉନ୍ମାଦନା—

"ନ ହୁଅ ନିରାଶ, ନ ହୁଅ ଦୁଃଖିତ,
ଉତ୍କଳର ଦେଖି ଦୁଃଖମୟ ଚିତ୍ର,

ସୁଖ ଦୁଃଖ ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଆସିବ ମୁକର ।
ଆଲୁଅ ଅନ୍ଧାର ଖେଳେ ଲୁଚକାଳି,
ଆସିବ ଆଲୁଅ ପଡ଼ିଲାଣି ପାଳି ।
ଉଇଁ ଆସୁଅଛି ସ୍ୱରାଜ୍ୟ-ତପନ
ଭାରତେ ଜାଗ୍ରତ ନରନାରୀଗଣ ।
ଘୁମାଇ ନ ରହ ଏ ସମୟେ ଆଉ,
ଉଠ ଉଠ ବେଗେ ବେଳ ଥାଉଁ ଥାଉଁ ।"

ଦିବ୍ୟଦର୍ଶୀ ଗୋପବନ୍ଧୁଙ୍କର ଦୂରଦୃଷ୍ଟି ସମ୍ପନ୍ନ ଘଟନାବଳୀ ଆଜି ଆଂଶିକ ସତ୍ୟରେ ପରିଣତ ହୋଇଛି ମାତ୍ର । ଆଂଶିକ ସତ୍ୟରେ— କାରଣ ସମଗ୍ର ଆର୍ଯ୍ୟଭୂମି ଭାରତବର୍ଷ ସ୍ୱାଧୀନତା ଲାଭ କରି ସୁଦ୍ଧା ତଥାପି ବିଚ୍ଛିନ୍ନ । ତାହାର ପ୍ରକୃତ ସୀମା ବର୍ତ୍ତମାନ ତାହା ଅଧିକାରରେ ନାହିଁ । ତାହାର ବିରାଟ ମଧ୍ୟର ଖଣ୍ଡବିଖଣ୍ଡ ହୋଇଯାଇଛି ସାମ୍ପ୍ରଦାୟିକତାର ଅଖଣ୍ଡମାୟୁ ପ୍ରଭାବ ଯୋଗୁ । ହିମାଚଳଠାରୁ ସୀମାଚଳ ପର୍ଯ୍ୟନ୍ତ ସୀମା ତଥାପି ପ୍ରଶ୍ନବାଚକ ଏବଂ ବ୍ରହ୍ମପ୍ରାନ୍ତ ସଙ୍ଗେ ଅଞ୍ଚଳର ପଶ୍ଚିମପ୍ରାନ୍ତ ପର୍ଯ୍ୟନ୍ତ ଭୂମିରେ ଭାରତଜନନୀର ପୂର୍ଣ୍ଣ ଅଧିକାର ନାହିଁ । ସବୁ ବିଚ୍ଛିନ୍ନ— ଦେଶର ସୀମା ଛିନ୍ନବିଚ୍ଛିନ୍ନ ଏବଂ ପ୍ରଦେଶଗୁଡ଼ିକର ମଧ୍ୟ ତଦନୁରୂପ ଅବସ୍ଥା ଏପର୍ଯ୍ୟନ୍ତ ସିଦ୍ଧାନ୍ତ ନିକଟରେ ପହଞ୍ଚି ନାହିଁ ।

ସ୍ୱାଧୀନତା-ସଂଗ୍ରାମରେ ବିଜୟୀ ହୋଇ ସୁଦ୍ଧା ଆର୍ଯ୍ୟଭାରତର ଅଖଣ୍ଡ ଐକ୍ୟ ଏପର୍ଯ୍ୟନ୍ତ ଆସିପାରି ନାହିଁ । ଅବସ୍ଥାଚକ୍ରର ଘଡ଼ି ଘଡ଼ି ପରିବର୍ତ୍ତନ ବେଳେ ପୁଣ୍ୟାତ୍ମା ଗୋପବନ୍ଧୁଙ୍କର ବଳବତୀ ଉଜ୍ଜ୍ୱଳ ଆଶା ସତେ କଅଣ ଫଳବତୀ ହୋଇପାରିବ ?

ବୈଦିକ ଧର୍ମମାତୃକାନୁସୂତ୍ରିତ ଶାସନପଦ୍ଧତି ଓ ସମାଜସଂସ୍ଥାର ପୁନରାବର୍ତ୍ତନ କରାଇବା ଲାଗି ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଜୀବନ ସର୍ବାଧିକ ପରିମାଣରେ ବ୍ୟାକୁଳ ହୋଇପଡିଛି । ଧର୍ମ, ସତ୍ୟ, ଶାନ୍ତି, ଶୃଙ୍ଖଳା, ସାର୍ବଜନୀନ ମୈତ୍ରୀ, ପ୍ରେମ, ବିଶ୍ୱାସ, ଶିକ୍ଷା, ସଂସ୍କାର ଓ ସଭ୍ୟତା ବୈଦିକ ଯୁଗର ପ୍ରାରମ୍ଭରୁ ପୁରାଣ ଯୁଗର ଶେଷପର୍ଯ୍ୟନ୍ତ ନାନା ବାଧାବିଘ୍ନ ସତ୍ତ୍ୱେ ଯେପରି ନିରବଚ୍ଛିନ୍ନ ଭାବରେ ଏକତ୍ର ସମାବିଷ୍ଟ ହୋଇ ସମଗ୍ର ଆର୍ଯ୍ୟଭୂମିର ମହତ୍ତ୍ୱ ଓ ଉତ୍କର୍ଷ ଅଖଣ୍ଡ ରଖି ଦେଶବିଦେଶରେ ଆର୍ଯ୍ୟ-

ଗୌରବର ବିଜୟ-ବୈଜୟନ୍ତୀ ଉତ୍ତୋଳନ କରିଆସିଥିଲା, ଆଜ ସେହି ଯୁଗର ଅତୁଳନୀୟ ପ୍ରଭାବ ସାରା ମାନବଜାତି ଉପରେ ପଡ଼ୁ—ଏହାହିଁ ଗୋପବନ୍ଧୁଙ୍କ ଅନ୍ତରର ଏକାନ୍ତ କାମନା । ରାଜନୀତି ଜାତୀୟଜୀବନର କର୍ମପଦ୍ଧତି ସଙ୍ଗେ ସାଙ୍ଗୋପାଙ୍ଗ ଭାବରେ ଜଡ଼ିତ—ଏଥିରେ ତାଙ୍କର ଅଣୁମାତ୍ର ସଂଶୟ ନାହିଁ । 'କାରାକବିତା'ର ବହୁ ଛନ୍ଦରେ ଆଦର୍ଶ ରାଜନୀତିର ଶୃଙ୍ଖଳିତ ସଂସ୍ଥା ବିଷୟରେ ସମ୍ୟକ୍ ଆଲୋଚନା କରିଛନ୍ତି ସେ । ଶୃଙ୍ଖଳିତ ରାଜନୀତିର ସର୍ବବ୍ୟାପକ ସୁବ୍ୟବସ୍ଥା ଏବଂ ବିଶୃଙ୍ଖଳିତ ରାଜନୀତିର ସର୍ବନାଶକ ପରିଣତିର ତୁଳନାତ୍ମକ ଚିତ୍ରଦେଇ ଆର୍ଷ ଯୁଗର ଧର୍ମପ୍ରଣୋଦିତ ବିଶ୍ୱାସବହ ଶୃଙ୍ଖଳିତ ଶାସନପଦ୍ଧତିର ଆଲୋଚନା କରିଅଛନ୍ତି ଏବଂ ଯୁଗଯୁଗାନ୍ତର ନିର୍ବିଶେଷରେ ଯାହା କରଣୀୟ, ବରଣୀୟ ଓ ଅନୁସରଣୀୟ, ତାହାର ଉତ୍କର୍ଷ ପ୍ରତିପାଦନ କରି ଅଧୁନାତନ ସଂକଟାପନ୍ନ ପରିସ୍ଥିତିରେ କେଉଁଟି ହିତକର, ସର୍ବସୌଖ୍ୟ ବିଧାୟକ ଓ ସର୍ବାବସ୍ଥାର ଅନୁକୂଳ ହେବ, ତାହାର ଯୁକ୍ତିଯୁକ୍ତ ବିଚାର କରିଅଛନ୍ତି । ଦୁରବସ୍ଥା ଲକ୍ଷ୍ୟ କରି ସେ ଆର୍ଯ୍ୟଋଷିମାନଙ୍କୁ ତର୍ପଣ କରିବା ଉଦ୍ଦେଶ୍ୟରେ କାରାଗାର ପ୍ରାଙ୍ଗଣ ଭିତରକୁ ଆମନ୍ତ୍ରଣ କରିଅଛନ୍ତି ଏବଂ ସେମାନଙ୍କର ପ୍ରେରଣାମୟୀ ନୀତି ଓ ଶୃଙ୍ଖଳାବଳରେ ଦେଶରୁ ଦୁଃଶାସନ ଘୁଞ୍ଚିଯାଉ ଏବଂ ସତ୍ୟଶାନ୍ତି ପ୍ରାଣେ ପ୍ରାଣେ ରାଜନ୍ତି କରୁ, ଏଥିଲାଗି ଭକ୍ତିଗଦଗଦ୍ ହୋଇ ସକରୁଣ ନିବେଦନ କରିଅଛନ୍ତି । ପୁଣ୍ୟଶ୍ଳୋକ ଗୋପବନ୍ଧୁ କଳ୍ପନାର ଅବଲମ୍ବନରେ କାରାପ୍ରକୋଷ୍ଠରେ ମଧ୍ୟ ସର୍ବପାବନୀ ଗଙ୍ଗାର ଅବତରଣ କରାଇ ତାହାର ନିଷ୍କଳଙ୍କ ଜଳରେ ତର୍ପଣ ବିଧାନ କରିବାକୁ ତତ୍ପର । ରାଜର୍ଷି, ଦେବର୍ଷି, ବ୍ରହ୍ମର୍ଷି, ଯକ୍ଷ, କିନ୍ନର, ଆକାଶ, ଗଗନ, ପବମାନ, ଅଗ୍ନି ପ୍ରଭୃତିଙ୍କ ସଙ୍ଗେ ସ୍ୱକୀୟ ପିତୃପିତାମହ ସମସ୍ତେ ଆହୂତ ହୋଇଛନ୍ତି ତର୍ପଣବିଧାନ ଉଦ୍ଦେଶ୍ୟରେ । କେବଳ ସେମାନେ ତୃପ୍ତ ହୋଇ ଚାଲିଯିବେ ନାହିଁ ତିଳତର୍ପଣାଦିର ବିହିତ ବୈଦିକ ବିଧାନ ପରେ; ସେମାନେ ରହି ଦେଶର, ଜାତିର ତଥା ସମାଜର ଦୁର୍ବସ୍ଥା ଲକ୍ଷ୍ୟ କରି କାରଣଗୁଡ଼ିକ ଗୋଟିଗୋଟି ସନ୍ଧାନ କରିସାରି ବିହିତ ବ୍ୟବସ୍ଥା ଦେଇଯିବା ଲାଗି ଧର୍ମ ଦିବ୍ୟବୁଦ୍ଧି ଗୋପବନ୍ଧୁଙ୍କ ବୈଦିକ ଧର୍ମପ୍ରଣୋଦିତ ହୃଦୟର ଚରମ କଳ୍ପନା କବିତାର ମାଧ୍ୟମରେ ଆତ୍ମପ୍ରକାଶ କରିଛି । ତାଙ୍କର ଏହି ଵାଲୋଚିତ ପ୍ରେରଣା ଉନ୍ମାଦନାମୟ ଭାଷାରଙ୍ଗରେ ଉଲ୍ଲୋଳ ହୋଇଉଠୁଛି—

"ରାଜପଦ ଅର୍ଥ ଯହିଁ ପରଜାରଞ୍ଜନ,
ସହେ ପ୍ରଜା ଚହିଁ ଏବେ କି ଗୁରୁଗଞ୍ଜନ ?
ଘୋର ଅପଗ୍ଭର ଯେବେ ରାଜନୀତି ନାମେ,
ସତ୍ୟ ରାଜନୀତି କାହିଁ ଏ ଭାରତ ଧାମେ ?
କାହିଁ ଏଥି ରାଜା ? ଏ ଯେ ନଉକର ସାହି,
ପ୍ରଜା ସୁଖଶାନ୍ତି ନାମେ ବୃଥା ଧର୍ମଦ୍ୱାହି ।
ପ୍ରଜାହିତ ପ୍ରଜାମତ ଛଳନା କେବଳ,
ପ୍ରେଷ୍ୟ ଗୋଷ୍ଠୀ ଇଚ୍ଛାଧୀନ ଏ ଶାସନବଳ ।
ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର ।
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି,
ଏହି ସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।
ଦେବଭୂମି କର୍ମଭୂମି ଧର୍ମଭୂମି ସାର,
ଭାରତରେ ନାହିଁ ନରଜନ୍ମ ଅଧିକାର ।
ଆର୍ଯ୍ୟଋଷି ପ୍ରତିଷ୍ଠିତ ପବିତ୍ର ଭାରତ,
ନିସ୍ତେଜ ନିଷ୍ପ୍ରଭ ହୀନ ପରପଦାନତ ।

× × ×

ଯାର ତଳେ ତିଂଶକୋଟି ଭାରତସନ୍ତାନ,
ନିଜ ବାସେ ପରବାସୀ, ନିଜ ଦେଶେ ଶ୍ୱାନ ।
ଯାର ଫଳେ ଉପବାସୀ, ମୋର ଦେଶବାସୀ,
ଭାରତଜନନୀ ମୋର ପରଦ୍ୱାରେ ଦାସୀ ।
ନୁହେ ସେ 'ନୀତି ମୋ ପିତୃ-ଦେବର୍ଷି ସମ୍ମତ,
ନୁହେ ତାହା ଆର୍ଯ୍ୟଧର୍ମ ନ୍ୟାୟ ସୁସଙ୍ଗତ ।
ଆସ ବିଶ୍ୱଦେବା, ଆସ ମହର୍ଷି ନିବହ,
ଆସ କୁରୁକୁଳବୃଦ୍ଧ ଶ୍ରେଷ୍ଠ ପିତାମହ
ଆସ ବର୍ହିଷଦ ଆଦି ସର୍ବ ପିତୃଗଣ
ଆସ ସର୍ବ ବସୁ ଯମ ଅନଳ ପବନ ।

× × ×

ଘେନ ମୋର ଜଳାଞ୍ଜଳି ଘେନ ନମସ୍କାର,,
ଦିବ୍ୟ ଅବଧାନେ ସର୍ବେ କର ହେ ଈଶ୍ବର ।"

× × ×

ଭଗବତ୍‌ପ୍ରେରିତ ଦେବଦୂତ ସେ । ଯଥାନିର୍ଦ୍ଦେଶରେ, ଯଥା କାଳରେ ଯଥୋଚିତ ବିଧାନ ବ୍ୟବସ୍ଥା କରିବା ଲାଗି ତାଙ୍କୁ ନିଶ୍ଚୟ ପ୍ରଦତ୍ତ ହୋଇଥିଲା ଭଗବତ୍ ନିର୍ଦ୍ଦେଶ । ଆଜି ଚଝ ଦିଶପଡ଼ୁଛି, ମାତ୍ର ପୂର୍ବତନ ଶାନ୍ତିଶୃଙ୍ଖଳାର ପୁନରାବର୍ତ୍ତନ ତଥାପି ସୁଦୂରପରାହତ । ସଙ୍କଟାପନ୍ନ ପରିସ୍ଥିତିରେ ଦିବ୍ୟଦର୍ଶୀ ଗୋପବନ୍ଧୁଙ୍କ ସୁଗୋଚିତ ପ୍ରେରଣା ଆଜି ଏ ଜାତିକୁ ଅନୁପ୍ରାଣିତ କରୁ ଏବଂ ତାଙ୍କ ସେବାତ୍ୟାଗଧର୍ମୋଜ୍ଜ୍ୱଳ ସତ୍ୟନିଷ୍ଠ ସାଧକ ଜୀବନର ସୁଶୃଙ୍ଖଳିତ ସରଣୀରେ ସମଗ୍ର ଦେଶ ନିର୍ଭୀକ ପଦକ୍ଷେପରେ ପ୍ରଧାବିତ ହେଉ—ଏହାହିଁ ଅନ୍ତରର ଏକାନ୍ତ କାମନା ।

— —

# ଗୋପବନ୍ଧୁ ସାହିତ୍ୟରେ ରୋମାଣ୍ଟିସିଜମ୍

ଶ୍ରୀ ପ୍ରମୋଦକୁମାର ମହାନ୍ତି

ଗ୍ରୀଷ୍ମଋତୁ ଏବେ ତା'ର
ତାରୁଣ୍ୟରେ ।
ଭିତରେ ତା'ର ମୃଦୁ ସ୍ପର୍ଶ

ସେଦିନ ଜଣେ ବନ୍ଧୁ ସନ୍ଧ୍ୟାର ପ୍ରାୟାନ୍ଧକାର ଭିତରେ ଆବୃତ୍ତି କରି ଲାଗିଲେ—

"ବାହାରେ ବହଇ କେଡ଼େ ସୁଶୀତଳ
ମଧୁର ମଳୟ ମୃଦୁ ମରୁତ
ନବ ମଲ୍ଲୀ କଢ଼ି ମୁଡ଼ୁକି ହସଇ ····

ଇତ୍ୟାଦି କଣ୍ଠୁ ସମସ୍ତ ଗୁଞ୍ଜରଣ ଖେଳି ବୁଲିଲା । କାହା ଲେଖାଏ ?

ହଜାରିବାଗ କାରା-କକ୍ଷର ନିଗଡ଼ ଭିତରୁ ବହୁ ଦିନ ତଳେ ଯିଏ କଳ୍ପନାର ପ୍ରସାରିତ ଦୃଷ୍ଟିରେ ନିରୀକ୍ଷଣ କରୁଥିଲେ ଦୂରଦୂରାନ୍ତର ପରିଧି-ପଥରେ ଓଡ଼ିଆ ଗାଁମାଟିର ମାୟା—ତା'ର ତାଳତମାଳର ସୀମା—ବସନ୍ତୋତ୍ସବର ପଲ୍ଲୀଦେବାଳୟର ଶ୍ରୀ ଅଥବା ବିଶ୍ୱର ପଥେ ପଥେ ମିଳନ ଅଭିସାରର ଚିହ୍ନ—ତାଙ୍କରି ଏ ଲଳିତ ରଚନା । ସେଦିନ ତାଙ୍କର ସ୍ମୃତି-କୋଷରେ ବାରମ୍ବାର ଗୁଞ୍ଜରିତ ହେଉଥିଲା ଭାର୍ଗବୀ ଅଥବା ଦୟାର ତଟଭୂମିରେ ଆହ୍ନିକ କରୁଥିବା ପ୍ରିୟ ପରିଜନର ଶାନ୍ତ ଗମ୍ଭୀର ମନ୍ତ୍ର ଉଚ୍ଚାରଣ । ଦିଗଦିଗନ୍ତର ବ୍ୟବଧାନରେ ଥାଇ ମଧ୍ୟ ସେଇ କବି ଗୋପବନ୍ଧୁଙ୍କ ଅନ୍ତରର ଆଶା ଓ ଭାବମୟ ଭାଷା ପଲ୍ଲୀ ଗୃହାଙ୍ଗନର ସକଳ ମମତାରୁ ଖୋଜି, ବାହାରର ପୁଷ୍ପିତ ନେପଥ୍ୟରେ ବସନ୍ତର ମୃଦୁ

ସଙ୍କେତକୁ ଚିହ୍ନି, ଚଳକା-ମହେନ୍ଦ୍ରକୁ ପ୍ରାଣର ଅନୁଭୂତି ମଧ୍ୟରେ ସ୍ପର୍ଶ କରି, କୌଣସି ପ୍ରସ୍ଫୁଟିତ ପୁଷ୍ପ ପରି ପାଖୁଡ଼ା ପରେ ପାଖୁଡ଼ା ବିକଶିତ ହୋଇ ଉଠିଥିବ୍...

"କା ଆଗେ ଗାଇବ ପରାଣ ସଙ୍ଗୀତ
କା ପାଶେ ବାଇବ ଅନ୍ତର ବୀଣା
କା କାନେ କହିବ ମରମ ବେଦନା
ମନ କଥା ମନେ ରହିଲା ସିନା ।"

ଏହି କଳ୍ପନାପ୍ରସୂତ କାବ୍ୟିକ ଦୁଃଖ ଓ ଭାବ-ପ୍ରବଣତା ହିଁ ରୋମାଣ୍ଟିସିଜମ୍‌ର ମୂଳ ସ୍ୱର ।

Louis Cazamian କହନ୍ତି:—

**"The Romantic spirit can be defined as an accentuated predominance of emotional life, provoked or directed by the exercise of imaginative vision and in its turn stimulating or directing such exercise."**

ରୋମାଣ୍ଟିକ୍ ସାହିତ୍ୟରେ ବ୍ୟକ୍ତିକ ଭାବପ୍ରବଣତା, ପ୍ରବୃତ୍ତିର ପ୍ରକାଶ, ସୌନ୍ଦର୍ଯ୍ୟ-ବିଳାସ ଓ ତଜ୍ଜନିତ ଆସକ୍ତି, ପ୍ରକୃତିର ଗୌରବ, ସାହସିକତା, ରହସ୍ୟମୟ କୌତୂହଳତା, ଆକୁଳତା, ସମ୍ମୋହିତ ଆବେଶ ପୁଣି ତରଙ୍ଗାୟିତ ଆଧ୍ୟାତ୍ମିକ ଅନୁଚିନ୍ତା-ପରିପୂର୍ଣ୍ଣ ଥାଏ । ଗୋପବନ୍ଧୁଙ୍କର ଅନ୍ୟ କୌଣସି ସୃଷ୍ଟି ଅପେକ୍ଷା ତାଙ୍କର 'କାରାକବିତାର ପ୍ରାୟ ସମସ୍ତ ରଚନା ଉପର୍ଯ୍ୟୁକ୍ତ ଭାବର ପରିଚ୍ଛେଦ ମଧ୍ୟରେ ନିଜର ପରିଚୟ ପ୍ରଦାନ କରେ ।

ଅନେକ ମନେ କରନ୍ତି, 'ବନ୍ଦୀର ଆତ୍ମକଥା,' ଧର୍ମପଦ,' 'ସତ୍ୟବାଦୀ' ଓ ସମାଜ'ର ସମ୍ପାଦକୀୟ ପୃଷ୍ଠାରେ ଓଡ଼ିଆ ଆତ୍ମାକୁ ଚିରଦିନ ଜାଗ୍ରତ, ବ୍ୟାକୁଳ ଓ ସହାନୁଭୂତିସମ୍ପନ୍ନ କରିବାକୁ ସମାଜ-ସଚେତନ—କବିଚିତ୍ତ ଯେଉଁ ଉଗ୍ରପନ୍ଥୀ ପ୍ରୟାସ କରିଥିଲା, ସେଥିରେ କୌଣସି ସୁକୁମାର କୋମଳ ମନୋବୃତ୍ତିର ସ୍ଥାନ ନ ଥିଲା; କିନ୍ତୁ ଜୀବନରେ ପତ୍ନୀ, ପୁତ୍ର, ବନ୍ଧୁ ଇତ୍ୟାଦି ସବୁ କିଛି ହରାଇ କେବଳ

କଥା କଥାକେ ଲୁହକୁ ଯେ ସମ୍ବଳ କରି ଧରିଥିଲେ, ସବୁ ଆଘାତର ପ୍ରଲେପ ଭାବରେ ଯେ ମନଭରି କ୍ରନ୍ଦନର ନୈବେଦ୍ୟ ଅର୍ପଣ କରି ପାରୁଥିଲେ, ସେ କବି ସେ କେବେ ତାଙ୍କର ଅଜ୍ଞାତରେ ରୋମାଣ୍ଟିକ ସୃଷ୍ଟି ଚେତନା ଭିତରେ ନିଜକୁ ନ ବାନ୍ଧିବେ—ଏହା କିଛି ଅସମ୍ଭବ ନ ଥିଲା ।

ବହୁ ସାର୍ଥକୋଜ୍ଜ୍ୱଳ ମୁହୂର୍ତ୍ତ ତାଙ୍କର ମନେ ପଡ଼ୁଛି । ମନେ ପଡ଼ୁଛି କେତେ କ'ଣ ହୋଇ ଯାଇଥିବାର ଶବ୍ଦ । ବନ୍ଦୀଶାଳାର ଦ୍ୱାର, ଗବାକ୍ଷ, ଅଙ୍ଗନପାର୍ଶ୍ୱରେ ପ୍ରତିଟି ସୂର୍ଯ୍ୟର ଉଦୟ ଅସ୍ତକୁ ଗୁହ୍ଣି ଗୁହ୍ଣି କେତେ ମୁହୂର୍ତ୍ତ ଅତିକ୍ରାନ୍ତ ହୋଇଯାଇଛି । ବହୁ ତନ୍ମୟ-ସ୍ନିଗ୍ଧ ସ୍ମୃତିର ଗୁଞ୍ଜନରେ ତାରୁଣ୍ୟର ଗୁହାଣୀ, ଆନତ ଭଙ୍ଗିମା ଲୀଳାଚଞ୍ଚଳ ଉଚ୍ଛନ୍ନ ଭାବ, ସବୁ ଆଜି ମନକୁ ଆବେଗାକୁଳ ଓ ଭାବପ୍ରବଣ କରୁଛି—

"ପ୍ରେମେ ଅବଗାହି
ନିଜ ପରିଚୟ
ପାଇଅଛି ମୁଁ ଏ
କ୍ଷୁଦ୍ର ଜୀବନେ,
ମୋ ହୃଦ-କଲ୍ଲୋଳ
ଉଚ୍ଛୁଳେ ଉଲ୍ଲାସେ
ଜଳେ ସ୍ଥଳେ ଫଳେ
ଫୁଲେ ଗଗନେ ।"
—(ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ)

କାବ୍ୟମୟ ଦକ୍ଷିଣା ପବନ ଆସୁଛି; ମଧୁଗ୍ରାହିର ସ୍ୱପ୍ନାଚ୍ଛନ୍ନ କାରାକକ୍ଷର ବାତାୟନ ପାର୍ଶ୍ୱରେ କବିଚିତ୍ତ ନିଜକୁ ନିଭୃତ ଅନ୍ଧକାରରେ ରଖି ଅତୀତର ପ୍ରିୟପରିଜନଙ୍କ ସ୍ମୃତି ପାଇଁ ସରସ ଓ ମନୋଜ୍ଞ ଭାବାବେଶ ପ୍ରଦାନ କରୁଛି ଏବଂ ପରେ ପରେ ରୁକ୍ଷକାରାକକ୍ଷର ବାସ୍ତବତା ଭିତରେ ତାହାକୁ ଜୋର କରି ଆଜି ନ ଭାବିବାପାଇଁ କବି ଯେଉଁ ଚେଷ୍ଟା କରିଛନ୍ତି, ସେଥିରେ କିଛି କମ କାରୁଣ୍ୟ ନାହିଁ । ତାଙ୍କ ମତରେ ହଜିଲା ଦିନର କଉଡ଼ି ଗଣିବା ଅପେକ୍ଷା ବର୍ତ୍ତମାନର ବାସ୍ତବତାରେ

ନିଜକୁ ବଂଶିତ କରିବା ଶ୍ରେୟସ୍କର । ତଥାପି ଶୂନ୍ୟତା ଓ ନିଃସଙ୍ଗତା ମଧ୍ୟରେ ଅଶାନ୍ତର ଟିକିଏ ହସ ଅବା ଟିକିଏ ଭୁଲ ଭାଙ୍ଗିଆ ଦୀର୍ଘଶ୍ୱାସ ଜୀବନର ବହୁମୂଲ୍ୟ କୋଟିନିଧି । ତାକୁ ବା ସେ କେମିତି ସ୍ମରଣରେ ନ ଆଣି ରହିପାରିବ ? 'ବନ୍ଦୀର ସ୍ୱଦେଶ ଚିନ୍ତା'ରେ ତେଣୁ "କେତେ ସୁଖ ସ୍ମୃତି ଜାଗେ ଏ ଅନ୍ତରେ କେତେ ଗୁରୁ ଚିତ୍ର ନାଚେ ପଲକେ"ର ପ୍ରକାଶ ସେଇ ଧାରଣା ଆଣିଦିଏ । ପୁଣି ପ୍ରିୟଜନ ବିରହ-କାତର ହୃଦୟ ପ୍ରଣୟର ସଙ୍ଗ ନିରୂପଣରେ କିଛି କମ ମର୍ମବିଳାପ କରିନାହିଁ—

ଫୁଲ ପରି ପ୍ରେମ
ଝାଉଁଳେ କି ବନେ
ପ୍ରେମ ଯେ ଅନନ୍ତ
ଅକ୍ଷୟ ଧାରା,
ଦୂର କଲେ ସତେ
ହେବ କି ଅନ୍ତର
ତୁମେ ଯେ ମୋ ପ୍ରାଣ-
ପ୍ରଣୟ-କାରା ।"

ଏଥିରେ କିଛି ଅନୁଭୂତି ସଞ୍ଚିତ ବାନ୍ଧବଙ୍କୁ ଫେରିପାଇବାର ଦୃଢ଼ ନିଷ୍ଠା ପ୍ରତିଭାତ । ଏ ରୋମାଣ୍ଟିକ ବିଶ୍ୱାସଜନିତ ମାର୍ମିକ ନିବେଦନ ଅକଳ୍ପିତକର ନୁହେଁ ।

C. M. Bowra କହନ୍ତି—

The Romantics believe that when imagination is at work it sees nothing to which the ordinary intelligence is blind and that it is ultimately connected with a special intuition. They combine imagination and truth"

ଦକ୍ଷିଣା ଆସୁଛି - ଦକ୍ଷିଣଦିଗର ବହୁ ଉପତ୍ୟକା, ଶ୍ୟାମଳ ପ୍ରାନ୍ତର, ମନୋରମ ଜନପଦ, ନୀଳଘନ କୃଷ୍ଣବର୍ଣ୍ଣୀ ନଦୀତୀର, ହ୍ରଦର କାକକୃଷ୍ଣ ନୀରବେଣୀ, ବହୁ ଛାୟା-ଶୀତଳ କୁଞ୍ଜ ଓ ସର୍ବୋପରି ଶୃଙ୍ଗମନ୍ତ୍ର ପୂତ ନୀଳାଚଳର ବାର୍ତ୍ତା ବହନ କରି ମେଘଦୂତ ପରି ଦକ୍ଷିଣା ଆସୁଛି । ଜାଗାଗାରେଉର ସମସ୍ତ ସୁଷମାସମ୍ପଦର ନିଜସ୍ୱ କାରୁଣ୍ୟ ଉଚ୍ଛଳିତ

ବାଣୀରେ ଏହି ଦରଦୀ ମରମୀ କବିଙ୍କୁ ଅଧିକ ଅଶ୍ରୁସଜଳ ଓ ବ୍ୟଥାସିକ୍ତ କରାଇବାପାଇଁ । ଦୂର ପର୍ବତ ସବୁବେଳେ ସୁନ୍ଦର; ପାସୋର ଯାଇଥିବା ଲୋକ ସବୁବେଳେ ଭଲ ।

ବସନ୍ତ ପ୍ରତି କବିଙ୍କର ବ୍ୟାକୁଳ ବିନମ୍ର ନିବେଦନ—
“କି ଦେଖିଲ ଆଜ ହେ ବସନ୍ତ ବାୟୁ
କହ ବେଗେ କର ନାହିଁ ଛଳନା,
ତୁମ୍ଭେ କି ନ ଜାଣ ନିର୍ବାସିତ ପ୍ରାଣ
ସ୍ୱଦେଶ ସନ୍ଦେଶେ ପାଏ ସାନ୍ତ୍ୱନା ?”

ଆଖି ଆଗରେ ତାଙ୍କର ପଡ଼ି ରହିଥିଲା ହତଭାଗିନୀ ଓଡ଼ିଶା ଓ ତାର ବକ୍ଷରେ ଅବାରିତ ଗତିରେ ପ୍ରସରି ଯାଇଥିବା ଆପଣାର ଚିହ୍ନା ମଣିଷସମାଜର ଜୀବନଲୀଳା । ସେଠାରେ ବନ୍ଧୁ ଶୋଭା, ସୌନ୍ଦର୍ଯ୍ୟ ଓ ସମ୍ପଦର କାରୁ ଏବେବି ମଉଳି ନାହିଁ—ମଳିନ ହୋଇ ନାହିଁ । ସେ ସବୁର ସ୍ମୃତି କାରାଗାର ଭିତରରେ କବିଙ୍କୁ ଯେ ଭାବାନନ୍ଦ ଦାନ କରିଛି ଓ ଯେଉଁ ପିପାସା ଓ ବିରହ କବିଚିତ୍ତକୁ ବେଦନାମଥିତ କରିଛି, ରୋମାଣ୍ଟିସିଜିମ୍ ଦୃଷ୍ଟିରୁ ତାହାର ବାଣୀବିନ୍ୟାସର ସ୍ୱରର ଉଦ୍ଧୃତି ଦେବାକୁ ଲୋଭହୁଏ ।

“ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମତେ ସ୍ୱପନ
କିଏ ବା ଦେବ ନେବ ପ୍ରେମ-ପୀୟୂଷ
ନୀରବ ହାହାକାରେ ଯିବ ଆୟୁଷ ?”

— ବିଶ୍ୱର ମିଳନ ଚିନ୍ତ

କବିଙ୍କ ଦୃଷ୍ଟିରୁ ଏ ପଙ୍‌କ୍ତି ଯେପରି ଅର୍ଥାନ୍ୱିତ ଓ ଆବେଗ-ପୂର୍ଣ୍ଣ—କଳ୍ପନାପ୍ରସାରୀ ଦରଦୀ ଭାବପ୍ରବଣତାର ମର୍ମବାଣୀ ବହନ କରି ଆଜିର ଧୂସର ଓ ଶ୍ରମକ୍ଳାନ୍ତ ବୁଦ୍ଧିଜୀବୀ ମନରେ ଏହା ସେହିପରି ରସବର୍ଷୀ ରୋମାଣ୍ଟିକ ଚେତାବନୀ ଓ ସ୍ମାରକୀ ।

ପ୍ରକୃତିର ଗୌରବଗାନ—ଏହାର ଚିରଜୀବନ୍ତ କାକଳୀ ଏବଂ ତା'ର ସୂକ୍ଷ୍ମକୋମଳ ରହସ୍ୟମୟତା ହିଁ ରୋମାଣ୍ଟିକ କବିର ଉଚ୍ଛ୍ୱାସର ହେତୁ । **“The Romanticism significantly stands for the return to the nature”**କୁ ଯଦି ଏକ ସାଧାରଣ ଲକ୍ଷଣ ବୋଲି

ଧରାଯାଏ, ତେବେ ଗୋପବନ୍ଧୁଙ୍କ ଅନ୍ୟାନ୍ୟ ସୃଷ୍ଟିଗୁଡ଼ିକରେ ଯାହା ଥାଉ ନା କାହିଁକି ସେ ତାଙ୍କର 'ବନ୍ଦୀର ସ୍ୱଦେଶ ଚିନ୍ତା'ର ରୋମାଣ୍ଟିକ ଭାବାବେଶପାଇଁ ବିଦଗ୍ଧ ପାଠକପ୍ରାଣରେ ଶ୍ରଦ୍ଧା ଓ ସମ୍ମାନର ଆସନ ବାଛିନେବେ ।

"ହେ ପ୍ରିୟ ବସନ୍ତ ! ତୁମର ଆଗମନ ପଥରେ ମୋର ପ୍ରିୟ ଆଶ୍ରମ ସତ୍ୟବାଦୀ—ତା ର ଚୁଲିଆଥିବା କୁଞ୍ଜଘେରି ନୀଳ-ସବୁଜ ବନାନୀ ତୁମ ଦୃଷ୍ଟିରେ ପଡ଼ୁଚି କି ? ବକୁଳ-ମାଳତୀ-ନାଗେଶ୍ୱର-ପୁଷ୍ପବୀଥିର ମହକରେ କଳାପ୍ରିୟର ସ୍ୱାଗତିକା ତୁମ ପାଇଁ ବାରମ୍ବାର ହୁଏ ତ ଧ୍ୱନିତ ହୋଇଥିବ । ଆଜି ଯେତେବେଳେ ତୁମେ—

"ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ
ରନ୍ଧ୍ରେ ରଚିଥିବ ଅପୂର୍ବ ସ୍ୱନ,
ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ ଜାଣି ବେନିଙ୍କ ମନ ।
ହସି ଉଠିଥିବେ ଯୁଗଳମୂରତି
ଖସିପଡ଼ୁଥିବ ଶ୍ରୀଅଙ୍ଗୁ ଫୁଲ,
ନବଘନ ଶିରେ ଆହା କି ରୁଚିର
ହରିଥିବ ବାଙ୍କ ମୟୂରଚୂଳ ।"

ଏଇ ଚିତ୍ରିମନ୍ତ ଚପଳଶ୍ରୀ କେତେ ଆନ୍ତରିକ ଓ ନିବିଡ଼ ନୁହେଁ ? ଗୋପବନ୍ଧୁଙ୍କ ଯେଉଁ କବିତା ପଢ଼ି ଏ ଜାତି ତା'ର ଗାଆଁ, ଗୃହ, ଦେବାଳୟ ଇତ୍ୟାଦି ଦେଖିବାକୁ, ଚିହ୍ନିବାକୁ ଚେଷ୍ଟାକଲା, ଆତ୍ମବିଶ୍ଳେଷଣ ଓ ଆତ୍ମନିରୀକ୍ଷଣ କରି ନିଜକୁ ନିଜର ପରିଚୟ ବାଢ଼ିଲା—ତାଆରି ତଳେ ବି ଏମିତି ପ୍ରକୃତିର ମାୟା, ସ୍ୱପ୍ନଲୋକର ନିବିଡ଼ତା, ଭଙ୍ଗା ମନ୍ଦିରର ପୃଷ୍ଠାରେ ପ୍ରଣୟର ଆବେଗ ଅଛି, ତାହା ଆମ ଭଳି ପଲ୍ଲବଗ୍ରାହୀ ଓ ପଦ୍ମଭୁକ୍ ପାଠକ ବୁଝିପାରିବ ନାହିଁ । ରୋମାଣ୍ଟିକ କବିତାର ସଜ୍ଞା ଆମ ଆଗରେ ଏଇଠି ପରିପୂର୍ଣ୍ଣ ହୋଇଛି ।

ଭାବୋଚ୍ଛ୍ୱାସର ପରିସ୍ଫୁଟନ ରୋମାଣ୍ଟିକ ଗୀତିକବିତାର ନିଜସ୍ୱ । ମାନସିକ, ଆତ୍ମିକ ବା ବ୍ୟକ୍ତିକ ଚିନ୍ତାକୁ ମନୋଜ୍ଞ ଓ ଆନ୍ତରିକତାର ସହିତ ପ୍ରକାଶ କରିବାପାଇଁ ଏଥିରେ ପ୍ରଚୁର ହୃଦୟବୃତ୍ତିର ଭାବ ରହିବା

ଆବଶ୍ୟକ । "Preoccupation with self or 'subjectivity' is the very product of Romanticism.' କବିର ଆତ୍ମିକ ସୁଖ ଦୁଃଖ, ବେଦନା, ବ୍ୟଥା, ତୃଷ୍ଣା ଓ ଆବେଗ ସମ୍ବଳିତ କଳ୍ପନାବିଳାସ; ସହାନୁଭୂତିଶୀଳ ସୌନ୍ଦର୍ଯ୍ୟ ପ୍ରକୃତି ରୋମାନ୍ଟିସିଜମ୍‌ର ଅନ୍ତର୍ନିହିତ ଗୁଣ । ବୌଦ୍ଧିକତା ଅପେକ୍ଷା ହୃଦୟବୃତ୍ତିର ପ୍ରାଧାନ୍ୟ ଓ ଏଥିନିମିତ୍ତ ନବଆଶା-ନବଚିନ୍ତାର ସମଧିକ ବିକାଶ ଥିବା ଆବଶ୍ୟକ । ରୋମାନ୍ଟିସିଜମ୍‌ର ପ୍ରଥମ ଓ ପ୍ରଧାନ ଚିହ୍ନ ହେଲା ମାନବହୃଦୟର ଗଭୀର ଓ କୋମଳ ଅନୁଭୂତି-ସବୁକୁ, ଅଜ୍ଞାତ ରହସ୍ୟମୟତାକୁ କଳ୍ପନାର ବର୍ଣ୍ଣରେ ରଞ୍ଜିତ କରିବା ।

ଗୋପବନ୍ଧୁଙ୍କ 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ", "ବନ୍ଦୀର ସାନ୍ତ୍ୱନୋକ୍ତି", "ବନ୍ଦୀର ସାନ୍ତ୍ୱ ଭାବନା", "ଦେଖାଦିଅ ବାରେ" କବିତାଗୁଡ଼ିକରେ କବିଙ୍କର ପ୍ରବହମାନ ରୋମାଣ୍ଟିକ ଚେତନାର ବିଭିନ୍ନ ସ୍ୱର ଆତ୍ମପ୍ରକାଶ କରିଛି ।

କବିର ବ୍ୟକ୍ତିଗତ ଉଚ୍ଛ୍ୱାସ, ଆବେଗରେ ବୈଚିତ୍ର୍ୟ, ଆତ୍ମିକ ଅନୁଭୂତିର ଚିତ୍ରଣ ଇତ୍ୟାଦି ପ୍ରକୃତି ଓ ପ୍ରବୃତ୍ତିର ରହସ୍ୟମୟତା ଉଚ୍ଛ୍ୱଳ ଛନ୍ଦ ମାଧ୍ୟମରେ ରୋମାଣ୍ଟିକ କବିତାର ଭାବର ପରିବେଷଣରେ ପ୍ରାଣ ପାଇ ଉଠେ । **Emili Legouis**ଙ୍କ ଭାଷାରେ **"The mysterious regions of feeling and the senses and the subtle relations between Men and Nature, were the chosen objects of its scrutiny."**

ରୋମାଣ୍ଟିକ କବିତା ପାଠକକୁ ପ୍ରକୃତି ଓ ତା ମଧ୍ୟରେ ଥିବା ରହସ୍ୟଘନ ସମ୍ପର୍କ ସମ୍ବନ୍ଧରେ ସଚେତନ କରାଏ । ଏହା ବୌଦ୍ଧିକ ଅନ୍ତର୍ଦୃଷ୍ଟି ବା ଚାତୁର୍ଯ୍ୟ ଉପରେ ପ୍ରାଧାନ୍ୟ ନ ଦେଇ ହୃଦୟର ସୂକ୍ଷ୍ମ ପ୍ରକାଶ ଲୋଡ଼େ ।

ସେ ଦୃଷ୍ଟିରୁ ଗୋପବନ୍ଧୁଙ୍କର ପ୍ରକୃତି ସମ୍ବଳିତ ସମ୍ପର୍କ ଅତ୍ୟନ୍ତ ନିବିଡ଼ ଓ ବିଶ୍ୱସ୍ତ । ଋଷିକୁଲ୍ୟାର ବେଳାଭୂମିରେ କବିସୂର୍ଯ୍ୟ ଚମ୍ପୂର ଲଳିତ ଝଙ୍କାର, ମହେନ୍ଦ୍ର-ମଞ୍ଜୁଷାର ବନଶ୍ରୀ, ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ଲଙ୍କାଆମ୍ବ ଅରଣ୍ୟର ପଲ୍ଲବିତ ଛାୟା ପ୍ରଭୃତିର ବର୍ଣ୍ଣନା ଚିତ୍ତାକର୍ଷକ । ମଳୟସ୍ପର୍ଶରେ ଚିଲିକାର ଦୃଶ୍ୟ କବିଙ୍କର ମନଶ୍ଚକ୍ଷୁରେ —

"ଚଞ୍ଚଳ ହିଲ୍ଲୋଳେ ଗୁରୁ ଗଣ୍ଡସ୍ଥଳେ
 ଚୁମ୍ବି ଥିବ ଯେବେ ଗାଢ଼େ ସମୀର
ସୁନ୍ଦରୀ ସର୍ବାଙ୍ଗେ ଉଠିଥିବ ରଙ୍ଗେ
 ଅପୂର୍ବ ଉଲ୍ଲାସ କମ୍ପାଇ ମୀର ।"

ଏ କବିତାରେ ଦୁର୍ବୋଧତା ନାହିଁ । ଆଧୁନିକ ଯାନ୍ତ୍ରିକ ମନର ଅସମାନତା ବା ଅସଙ୍ଗତି ନାହିଁ । ରାଜନୀତିର ଶୀର୍ଷ୍ୟକତା କମ୍ବା ଚେଷ୍ଟାକୃତ ଛନ୍ଦରେ ଭାବବନ୍ଧନର ଦୁର୍ବଳତା ବି ନାହିଁ ।

ବସନ୍ତ ଆଗମନ ପଥରେ—

"ଉଦ୍‌ବେଗ ବାହାନା କରିଥିବ ସିନା
ଉପେକ୍ଷି ନ ଥିବ ତା ସମାଦର,
ଯେ ଯେତେ କର୍ମଠ କଟିରେ କ୍ଷଣେ ମଠ
ପ୍ରେମ ପାଶୁ ହେବାବେଳେ ଅନ୍ତର ।
ଫୁଲ ଉଠିଥିବ ମହାନଦୀ ବକ୍ଷ
କମ୍ପି ଉଠିଥିବ ଲହରୀ-ହାର,
ପଠା ଖଡ଼ପତ୍ର ଥିବେ ମଥା ପୋତ
ମୃଦୁହାସେ ଦେଖି ଅଙ୍ଗବିକାର ।"

ଗୋପବନ୍ଧୁଙ୍କ ପ୍ରେମିକ ହୃଦୟର ପ୍ରାଣୋଜ୍ଜ୍ୱଳ ଅନ୍ତର୍ଦୃଷ୍ଟି ଆଉ କେତେ ଚିତ୍ରପ୍ରସାରୀ ଓ ହୃଦୟସ୍ପର୍ଶୀ ହୋଇଥାଆନ୍ତା ?

ହନେ ସତ୍ୟବାଦୀ ବକୁଳ କୁଞ୍ଜଅନା ଓ ତମାଲଗହଳରେ ଏ ଜାତିର ଯେଉଁ ପ୍ରାଣବହ୍ନି ଜଳି ଉଠିଥିଲା, ସେ ଧପଧପିତ ଆଗ୍ନେୟଶିଖାର ସର୍ବପ୍ରଥମ ରାଜନୈତିକ ଓ ସାହିତ୍ୟିକ ପ୍ରତିନିଧି କବି ଗୋପବନ୍ଧୁ । ଆଖିରେ ଆଖିଏ ଲୁହ ଧରି "ଧର୍ମପଦ"ରେ ଯେ ନିରାଭରଣ ଭାବେ କହିଗଲେ "ପିଲାଦିନରୁ କବି ହେବାପାଇଁ ମୋର ଆଗ୍ରହ ଥିଲା"—ସେଇ ପିଲାଦିନର ଅସଲ ଭାବପ୍ରବଣ ଓ ଆଗ୍ରହଶୀଳ କବିତ୍ୱ ତାଙ୍କ ଜାତୀୟତାବାଦୀ କବିତାଗୁଡ଼ିକରେ ଯେତେ ନାହିଁ ସେତେ ବେଶୀ ଅଛି ତାଙ୍କର ଏଇ ରୋମାଣ୍ଟିକ କବିତାପୁଞ୍ଜରେ ।

ଜାତୀୟତା ଓ ରୋମାଣ୍ଟିସିଜ୍‌ମ୍ ମଧ୍ୟରେ ଥିବା ଆକାଶ ପାତାଳ ପାର୍ଥକ୍ୟର ପରିଧି ଊର୍ଦ୍ଧ୍ୱରେ କେମିତି ବା ସେ ଉଭୟର ନାଡ଼ିସଂଯୋଗ କରିପାରିଲେ ?

---

# ଗୋପବନ୍ଧୁ-ପରମ୍ପରା

ଅଧ୍ୟାପକ କାଙ୍ଗାଳୀଚରଣ ପତି, ଶ୍ରୀ ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ

ପୁଣ୍ୟଶ୍ଳୋକ ଗୋପବନ୍ଧୁଙ୍କ ଜୀବନ-ଚରିତ ଆଲୋଚନା କଲେ ମନରେ ଏକ ପବିତ୍ର ଏବଂ ମହାନ୍ ଭାବର ଉଦ୍ରେକ ହୁଏ । ଗୋପବନ୍ଧୁ ଆମ୍ଭମାନଙ୍କ ପରି ନରଶରୀର ଧାରଣ କରି ନିଜ ଜୀବନକୁ ଜନହିତକର କାର୍ଯ୍ୟରେ, ଜନକଲ୍ୟାଣ ନିମିତ୍ତ, 'ଲୋକ ସଂଗ୍ରହ' ନିମିତ୍ତ ଉତ୍ସର୍ଗ କରିଥିଲେ; କିନ୍ତୁ ମନେହୁଏ, ଗୋପବନ୍ଧୁ ଏସବୁର ଊର୍ଦ୍ଧ୍ୱରେ ଯେପରି ଆହୁରି କିଛି ଗଭୀରତର, ମହତ୍ତର ଏବଂ ବିଶାଳତର ଥିଲେ । ସେ ଯେପରି ଆମର ନିକଟତମ ବନ୍ଧୁ, ଗୁରୁ, ଦିଶାରୀ, ପ୍ରିୟତମ ନେତା ଓ ପଥଦ୍ରଷ୍ଟା । ତାଙ୍କର ନେତୃତ୍ୱ ଓ ଚାଳନାରେ ଯେପରି ଏକ ଅପୂର୍ବ ଆନ୍ତରିକ ଶ୍ରଦ୍ଧା ଓ ପ୍ରେମର ସଞ୍ଚାର ଥିଲା । ଆଜି ଗୋପବନ୍ଧୁ ସମଗ୍ର ମାନବସମାଜ ନିକଟରେ ଯେପରି ଏକ ଅମୃତମୟ ପୁରୁଷ, ଏକ ମହାନ୍ ପରମ୍ପରାର ପ୍ରତୀକ, ସୂଚନା, ଇଙ୍ଗିତ ବା ନିର୍ଦ୍ଦେଶ । ଏହି ଇଙ୍ଗିତ ଓ ସୂଚନା ହିଁ ମାନବ-ସମାଜର କ୍ରମପରିଣତିର ସୂଚନା ବା ଇଙ୍ଗିତ । ଗୋପବନ୍ଧୁ ଭବିଷ୍ୟତ ମାନବ-ସମାଜର ଦିଶାରୀ; ତାଙ୍କ ଜୀବନର କର୍ମପ୍ରେରଣା ଓ ଶକ୍ତି ଏକ ଶାଶ୍ୱତ ଉତ୍ସରୁ ଉଦ୍ଭୂତ । ମନୁଷ୍ୟ ନିଜ ଜୀବନରେ ଯଦି ଏହି ଉତ୍ସକୁ ଆବିଷ୍କାର କରିପାରେ ଏବଂ ସେହି ମହାନ୍ ପରମ୍ପରାରେ ନିଜକୁ ଅଧିଷ୍ଠିତ କରିପାରେ, ତାହାର ଅଭ୍ୟୁତ୍‌ଥାନ ଯେ ସୁନିଶ୍ଚିତ, ଏଥିରେ ସନ୍ଦେହ ନାହିଁ । ଆମ୍ଭେମାନେ ଆଜି ଏହି ପ୍ରବନ୍ଧରେ ଗୋପବନ୍ଧୁଙ୍କ ଜୀବନର ସେହି କେତେକ ଦିଗର ଆଲୋଚନା କରିବା ଯାହା ତାଙ୍କୁ ଏକ ଅମର ପରମ୍ପରାର ପ୍ରତୀକରୂପେ ପ୍ରତିଷ୍ଠିତ କରିଛି ।

ଏ କଥା କହିବା ସର୍ବାଦୌ ଆବଶ୍ୟକ ଯେ, ଗୋପବନ୍ଧୁ ପରମ୍ପରା ଆର୍ଯ୍ୟଧର୍ମୀ । ଆବହମାନ କାଳରୁ ମୁନି ଋଷି-ସାଧୁ-ସନ୍ଥ ଓ ମହାପୁରୁଷମାନଙ୍କଦ୍ୱାରା ଆର୍ଯ୍ୟ ପରମ୍ପରା ପରିପୁଷ୍ଟ ଓ ସମୃଦ୍ଧ ହୋଇ-

ଆସିଛୁ । ଏହା ହିଁ ଭାରତୀୟ ସଂସ୍କୃତିର ପ୍ରାଣବାୟୁ । ଗୋପବନ୍ଧୁ ସେହି ଆର୍ଯ୍ୟ-ଜୀବନ, ଆର୍ଯ୍ୟ ଚରିତ୍ର ଓ ଆର୍ଯ୍ୟ ପରମ୍ପରାର ପ୍ରତୀକ ଥିଲେ । ଆର୍ଯ୍ୟପରମ୍ପରାର ସର୍ବଶ୍ରେଷ୍ଠ ଲକ୍ଷଣ ଏହି ।

ପ୍ରଥମତଃ ଏହା ଐଶ୍ୱରୀୟ, ଆଧ୍ୟାତ୍ମିକ, ଆତ୍ମିକ । ଏହି ଦୃଶ୍ୟମାନ ବିଶ୍ୱର ବସ୍ତୁରାଜିର ପଶ୍ଚାତ୍‌ରେ ଏକ ପରମ ସଦ୍‌ବସ୍ତୁ ନିହିତ ଅଛି । ଏହା ହିଁ ଏକାଧାରରେ ବିଶ୍ୱାତୀତ, ବିଶ୍ୱଗତ ଓ ବ୍ୟକ୍ତିଗତ । ଏହି ଚଳନଶୀଳ ବିଶ୍ୱର ବସ୍ତୁରାଜିର କ୍ରିୟାପ୍ରତିକ୍ରିୟା ମଧ୍ୟରେ, ଘାତ ପ୍ରତିଘାତ, ଉତ୍‌ଥାନ ପତନ ଓ ସକଳ ଘଟଣା ମଧ୍ୟରେ ଏହି ପରମ ତତ୍ତ୍ୱ ହିଁ ନିହିତ । ବ୍ୟକ୍ତିର ଅନ୍ତରରେ ଏହା ହିଁ ସତ୍ୟ ଏବଂ ଆଲୋକଶକ୍ତି ଓ ଆତ୍ମାରୂପେ ପ୍ରତିଷ୍ଠିତ । ଯୁଗ ଯୁଗର ବିବର୍ତ୍ତନ ମଧ୍ୟରେ ମନୁଷ୍ୟ ମଧ୍ୟରେ ଯାହା ଅମରତ୍ୱ ବୋଲି ପ୍ରତୀୟମାନ ହୁଏ, ତାହା ହିଁ ଏହି ଆତ୍ମା ।

ଆର୍ଯ୍ୟ-ପରମ୍ପରାର ଏହି ଆଧ୍ୟାତ୍ମିକ ଓ ଆତ୍ମିକ ଦିଗଟି ଗୋପବନ୍ଧୁଙ୍କ ଈଶ୍ୱର-ପ୍ରୀତିରେ ସ୍ପଷ୍ଟରୂପେ ଫୁଟି ଉଠିଥିଲା । ଗୋପବନ୍ଧୁ ଥିଲେ ସ୍ୱୟମ୍ଭୂ ପୁରୁଷ । ତୁଷାରପିଣ୍ଡରୁ ନିର୍ଝର ଯେପରି ପ୍ରବାହିତ ହୁଏ, ସୂର୍ଯ୍ୟଙ୍କ ମଧ୍ୟରୁ ତେଜୋରାଶି ଯେପରି କ୍ଷରିତ ହୁଏ, ସିଦ୍ଧାନ୍ତ ମଧ୍ୟରୁ ଅନୁଶୀଳନ ଯେପରି ପରିସ୍ଫୁଟ ହୁଏ, ଗୋପବନ୍ଧୁଙ୍କ ମଧ୍ୟରୁ ଈଶ୍ୱରପ୍ରୀତି, ଭଗବତ୍-ପ୍ରେମ ଓ ନିର୍ମଳ ଆଧ୍ୟାତ୍ମ୍ୟପ୍ରବୃତ୍ତି ସେହିପରି ପରିସ୍ଫୁଟ ହୋଇଛି । ଗୋପବନ୍ଧୁ ଯେପରି ଏକ ଶୁଦ୍ଧ ଆତ୍ମା, ଏକ ନିଷ୍କଳଙ୍କ ଦେବୋପମ ପବିତ୍ର ପୁରୁଷ—ଅଶରୀରୀ ଭଗବତ୍ ସତ୍ତ୍ୱା ଓ ଆଲୋକ । ଗୋପବନ୍ଧୁଙ୍କର ଭଗବତ୍ ପ୍ରେମ ଓ ଅର୍ଚ୍ଚନା ଏପରି ସ୍ୱତଃପ୍ରବୃତ୍ତ ଓ ସହଜାତ ତଥା ସ୍ୱାଭାବିକ ଥିଲା ଯେ, ମନେ ହେଉଥିଲା ଯେପରି ତାଙ୍କ ମଧ୍ୟରେ ଦିବ୍ୟ ଓ ମାନବୀୟର ସମ୍ମିଳନ ଘଟିଛି । "The human in him paced with the Divine." ଗୋପବନ୍ଧୁ ନିଜର ଅନ୍ତରରେ ଦେବତ୍ୱ ଅଧିଷ୍ଠାନ ସମ୍ବନ୍ଧରେ ପୂର୍ଣ୍ଣରୂପେ ସଚେତନ ଥିଲେ ।

"ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ,
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ ।
ହୃଦ କପିଳାସେ ତୋର ବିହେ ପ୍ରେମଝର,
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୂ ଶଙ୍କର ।

ଶୁଚିମନ୍ତ ହୋଇ ମାତ ଜ୍ଞାନ ଦୀପ ଜାଳି,
ଶୁଦ୍ଧ ଭକ୍ତି-ରସ ଦିଅ ସେ ଶ୍ରୀପଦେ ଢାଳି ।
ଉଜାଗର ରହି କର ତାଙ୍କ ପ୍ରିୟ କର୍ମ,
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି ଧର୍ମ ।
ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନ ଭୁଲ ପଥ ହେ ସ୍ୱରଗଯାତ୍ରୀ !"

—(ଅବକାଶ ଚିନ୍ତା)

ଗୋପବନ୍ଧୁଙ୍କର ସମଗ୍ର ଜୀବନ ଏକ ସମୟରେ ଭଗବତ୍‌ମୁଖୀ ହୋଇଛି । ତାଙ୍କର ସକଳ ପ୍ରେରଣା ଈଶ୍ୱରାନୁମୋଦିତ ହେଉ, ଏହା ହିଁ ସେ ଚାହୁଁଥିଲେ ।

"ଧର୍ମ ଅନୁକୂଳ ଯେବେ ମୋ କାମନାଚୟ,
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।"

ଗୋପବନ୍ଧୁ କେବଳ ବ୍ୟକ୍ତିଗତ ଜୀବନରେ ନୁହେ, ସମଷ୍ଟି ଓ ଜାତିଗତକ୍ଷେତ୍ରରେ ମଧ୍ୟ ଭଗବତ୍‌ଚ୍ଚେଳନାକୁ ଉପଲବ୍ଧି କରିଥିଲେ । ଉତ୍କଳ ସଂସ୍କୃତି, ଚିନ୍ତାଧାରା, ଜାତୀୟତା ପଛରେ ଏକ ଚିନ୍ମୟ ପୁରୁଷଙ୍କ ସାନ୍ନିଧ୍ୟ ଓ ଏକ ଅମୋଘ ବିଧାନ ସେ ସର୍ବଦା ଅନୁଭବ କରୁଥିଲେ ।

"ବିଚକ୍ଷଣେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।"

ଗୋପବନ୍ଧୁଙ୍କର ଆତ୍ମନିବେଦନ ଓ ଭକ୍ତିର ପରାକାଷ୍ଠା ଦେଖିବାକୁ ମିଳେ ଯେତେବେଳେ ସେ ଏକ ନୈସର୍ଗିକ ଭାବରେ ତନ୍ମୟ ହୋଇ ସର୍ବତ୍ର ପରମପୁରୁଷ ଜଗନ୍ନାଥଙ୍କ ଅଧିଷ୍ଠାନକୁ ଅନୁଭବ କରିଛନ୍ତି ।

"ଥିଲେ ଯହିଁ ତହିଁ ଭାରତ ବକ୍ଷରେ,
ମଣିବି ମୁଁ ଅଛି ଆପଣା କକ୍ଷରେ ।
"ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟଧାମ,
ସକଳ ସଲିଳ ପଞ୍ଚତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।

× × ×

ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦୟ
ନୀଳାଚଳ ଶୁଦ୍ଧ ଭାରତ ହୃଦୟ ।
ଥିଲେ ଯହିଁ ତହିଁ ଭାରତ ଶଯ୍ୟାରେ
ମଣିବି ମୁଁ ଅଛୁ ନୀଳଚକ୍ର ତଳେ ।"

ସଂସାରର ଯାବତୀୟ କର୍ମ ମଧ୍ୟରେ ବୁଡ଼ି ରହି ମଧ୍ୟ ଗୋପବନ୍ଧୁଙ୍କର ଏବଂବିଧ ଶ୍ରଦ୍ଧା, ଈଶ୍ୱର-ଭକ୍ତି, ଭଗବତ୍ ପ୍ରୀତି ବାସ୍ତବରେ ଅତି ଅଲୌକିକ । ଭଗବାନଙ୍କ ଆଦେଷ୍ଟ କର୍ମ ସମ୍ପାଦନ ଏବଂ ସକଳ କର୍ମ ତାଙ୍କ ଚରଣରେ ନିବେଦନ ଓ ନିଃଶେଷରେ ସମର୍ପଣ ଏହା ହିଁ ଗୀତାର ଚରମ ବାଣୀ ଥିଲା । ଏହା ହିଁ ଆର୍ଯ୍ୟ-ପରମ୍ପରାର ବୈଶିଷ୍ଟ୍ୟ । ଗୋପବନ୍ଧୁ ଏହି ମହାନ୍ ପରମ୍ପରାକୁ ନିଜ ଜୀବନରେ ଅବ୍ୟାହତ ରଖି ପାରିଥିଲେ ।

ସଂସାର, କର୍ମ ଓ ଜୀବନ ଜୀବର ବନ୍ଧନର କାରଣ । ଏହି ବନ୍ଧନରୁ ମୁକ୍ତି ପାଇବାକୁ ହେଲେ ସଂସାର, କର୍ମ ଓ ଜୀବନର ମୂଳ ଗ୍ରନ୍ଥିଗୁଡ଼ିକୁ ନିର୍ମୂଳ କରି 'ନିର୍ବାଣ'ରେ ଫେରିଯିବାକୁ ହେବ । କିନ୍ତୁ ଏହାଠାରୁ ସହଜତର ଉପାୟ ହେଲା, ସଂସାର, କର୍ମ ଓ ଜୀବନକୁ ଭଗବତ୍ ଚରଣରେ ଅର୍ପଣ କରି, ତାଙ୍କର ପରମ ଆଶ୍ରୟରେ ରହିବା ଏବଂ ତାଙ୍କର ଇଚ୍ଛା ଓ ସଂକଳ୍ପରେ ପ୍ରେରିତ ହୋଇ ଜୀବନକୁ ଯଜ୍ଞରେ ପରିଣତ କରିବା । ଶେଷୋକ୍ତ ମାର୍ଗ ହିଁ ଆର୍ଯ୍ୟ-ଜୀବନର ପରମ୍ପରା । ଗୋପବନ୍ଧୁ ଏହି ପଥର ପଥିକ ଥିଲେ—ଭଗବତ୍ ଚରଣରେ ଆଶ୍ରୟ ନେଇ; ଜୀବନକୁ ଯଜ୍ଞରୂପେ ନିବେଦନ କରି ସେ ଏକ ମୁକ୍ତ ସତ୍ତାରେ ପରିଣତ ହୋଇଥିଲେ । ସମଗ୍ର ମାନବସମାଜ ଯେତେବେଳେ ନିମ୍ନସ୍ତରରୁ ଏହି ଉଚ୍ଚତର ସୋପାନରେ ଉଠିଯିବ, ସେତେବେଳେ ଏହି ଆଦର୍ଶ ହିଁ ହେବ ଏକ ଅବଶ୍ୟମ୍ଭାବୀ ପରିଣାମ ।

ଦ୍ୱିତୀୟତଃ ଆର୍ଯ୍ୟ ପରମ୍ପରାର ଅନ୍ୟତମ ବୈଶିଷ୍ଟ୍ୟ ହେଲା 'ଭୂମା'ର ସନ୍ଧାନ । "ଯୋବୈ ଭୂମାତ୍ ନାଲ୍ପେ ସୁଖମସ୍ତି"—ଏହା ହିଁ ଆର୍ଯ୍ୟ ଜୀବନର ଯାତ୍ରାପଥରେ ଗୋଟାଏ ମହାନ୍ ଆଦର୍ଶ । ଅନ୍ୟ କଥାରେ କହିବାକୁ ଗଲେ—ଆର୍ଯ୍ୟ-ପରମ୍ପରା ସର୍ବଦା ହିଁ ବିଶ୍ୱଜନୀନ ସାର୍ବଜନୀନ ଉଦାର, ଯାହା ସଂକୀର୍ଣ୍ଣ, ସଙ୍କୁଚିତ, କ୍ଷୁଣ୍ଣ ଓ ଖଣ୍ଡିତ, ତାହା ଆର୍ଯ୍ୟ-

ଜୀବନଧାରାର ପ୍ରତିବନ୍ଧକ, ତା ସ୍ପୃହଣୀୟ ନୁହେଁ । ଗୋପବନ୍ଧୁଙ୍କ ଜୀବନରେ ଆର୍ଯ୍ୟଜୀବନର ଏହି ଆଦର୍ଶ ହିଁ ଅତି ସ୍ପଷ୍ଟଭାବେ ଫୁଟି ଉଠିଛି । ଗୋପବନ୍ଧୁ କୌଣସି କ୍ଷେତ୍ରରେ ହିଁ ସଂକୀର୍ଣ୍ଣ ନ ଥିଲେ । ତାଙ୍କର ଜୀବନ-ତନ୍ତ୍ରୀରେ ଯେପରି ବିଶ୍ୱର ଝଙ୍କାର ଉଠୁଥିଲା । ସେ ଭାବୁଥିଲେ ସେ ଯେପରି ସର୍ବପ୍ରାଣରେ, ସକଳ ବସ୍ତୁରେ ମିଶିଯାଇପାରନ୍ତି, ସକଳ ବସ୍ତୁ ଯେପରି ତାଙ୍କର ଅତି ନିକଟତମ । ତାଙ୍କ ଜୀବନର ଏହି ଦିଗଟି ତାଙ୍କର ସାର୍ବଜନୀନ ମାନବ-ପ୍ରୀତିରେ ଫୁଟିଉଠିଛି । ମାନବୀୟ ପ୍ରୀତି ଓ ଶ୍ରଦ୍ଧା ଗୋପବନ୍ଧୁଙ୍କ ପ୍ରାଣକୁ ଉଦ୍‌ବେଳିତ କରିଛି । ନିଜ ଓ ପର ବୋଲି ସେ କିଛି ମାତ୍ର ବିଭେଦ ରଖିପାରି ନାହାନ୍ତି । ତାଙ୍କର ଏବଂବିଧ ପ୍ରେରଣାର ଉତ୍ସ୍ରୋତ ହିଁ ଜାତି ନୁହେ, ସମାଜର ସମଷ୍ଟିଗତ ଅହଂକାର ( Collective ego ) ନୁହେ । ତାଙ୍କର ମାନବ-ପ୍ରୀତି ଐଶ୍ୱରୀୟ, ଅତୀନ୍ଦ୍ରିୟ । ମନୁଷ୍ୟ ନିମିତ୍ତ ମନୁଷ୍ୟର ସେବା କରି ନାହାନ୍ତି । ମନୁଷ୍ୟ ସେବାରେ ସେ ନିଜକୁ ଉତ୍ସର୍ଗ କରିଛନ୍ତି—ଏକ ଭଗବତ୍ ସେବାରୂପେ, ଯଜ୍ଞରୂପେ, ନିବେଦନରୂପେ ମାନବ ସେବାରେ ଏହି ଆଦର୍ଶ ଭାବୀ-ମାନବସମାଜର ପୁନରୁତ୍‌ଥାନ ଓ ଐକ୍ୟ ଦିଗରେ ଏକ ମାଇଲଖୁଣ୍ଟ । ନିଜ ଜୀବନରେ ଗୋପବନ୍ଧୁ ଏହି ଯେଉଁ ମହାନ୍ ଆଦର୍ଶ ପ୍ରତିଷ୍ଠା କରିଥିଲେ, ତାହା ମନ୍ତ୍ରବତ୍ ଏହି ବାଣୀରେ ପର୍ଯ୍ୟବସିତ ହୋଇଛି ।

"ନିଜ ସ୍ୱାର୍ଥଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।"

ତୃତୀୟତଃ ଆର୍ଯ୍ୟପରମ୍ପରାର ଅନ୍ୟତମ ବୈଶିଷ୍ଟ୍ୟ ହେଲା ତ୍ୟାଗ । ମାନବ ଜୀବନ—ବିଶେଷତଃ ଯେଉଁମାନେ ଉଚ୍ଚତର ଓ ମହତ୍ତର ଜ୍ୟୋତିର୍ମୟ ପଥର ପଥିକ ହେବେ—ତ୍ୟାଗ ଉପରେ ପର୍ଯ୍ୟବସିତ ହେବା ଉଚିତ । ବିନା ତ୍ୟାଗ ବା ଆତ୍ମପ୍ରତ୍ୟାଖ୍ୟାନରେ ଅନ୍ତର୍ଜୀବନର ଅଭ୍ୟୁଦୟ ହୁଏ ନାହିଁ । ସାଂସାରିକ ସ୍ୱାର୍ଥ ମୋହ, ଲାଳସା ବା ବିଭିନ୍ନ କାମନା ବାସନା—ତାହା ଯେତେ ବିଶାଳ ଓ ମହାନ୍ ହେଉ, ଯେ ପର୍ଯ୍ୟନ୍ତ ବ୍ୟକ୍ତିକୁ ଅଧିକାର କରିଅଛି, ସେ ପର୍ଯ୍ୟନ୍ତ ତାହାଠାରୁ କୌଣସି ଉଚ୍ଚତର ବସ୍ତୁର ଆଶା କରାଯାଇ ପାରେ ନାହିଁ । ଭୋଗ ନୁହେ ତ୍ୟାଗ, ପ୍ରିୟ ନୁହେ ଶ୍ରେୟ, ଅଧିକାର ନୁହେ ନିବେଦନ ଆର୍ଯ୍ୟ-ଚରିତ୍ରର ପାରମ୍ପରିକ ଗୁଣ ।

ଗୋପବନ୍ଧୁଙ୍କ ଜୀବନର ଏହି ଦିଗଟି ତାଙ୍କର ଜାତି-ପ୍ରୀତିରେ ଫୁଟିଉଠିଛି । ଗୋପବନ୍ଧୁଙ୍କ ସାଧନାର ବିରାଟ ପ୍ରାସାଦ ତାଙ୍କ ଜୀବନର ତ୍ୟାଗର ଭିତ୍ତିରେ ଗଠିତ ହୋଇଛି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି, ଆତ୍ମପ୍ରତ୍ୟାଖ୍ୟାନ, ଆତ୍ମବଳି ଓ ଗଭୀର ତ୍ୟାଗ ତାଙ୍କ ପକ୍ଷେ ଅତି ସ୍ୱାଭାବିକ, ସହଜ ଥିଲା; ହୁଏତ ଏହି ଅଲୌକିକ ପ୍ରତିଭାଶାଳୀ ମହାମାନବଙ୍କର ତାହା ହିଁ ସ୍ୱଧର୍ମ ଥିଲା । ଜାତୀୟଜୀବନରେ ଗୋପବନ୍ଧୁ ସ୍ୱାର୍ଥତ୍ୟାଗର ଯେଉଁ ଅପୂର୍ବ ପରମ୍ପରା ସୃଷ୍ଟି କରିଛନ୍ତି, ତାହାର ପଟାନ୍ତର କ୍ୱଚିତ ଦେଖାଯାଏ । ସେ ଜାଣୁଥିଲେ, ଉପଲବ୍ଧି କରୁଥିଲେ ମର୍ମେ ମର୍ମେ—ବ୍ୟକ୍ତି ନିଜପାଇଁ ନୁହେ ସମଷ୍ଟି, ଗୋଷ୍ଠୀ ଓ ଜାତିପାଇଁ ଏବଂ ବ୍ୟକ୍ତିର ଆତ୍ମଦାନର ଭିତ୍ତି ଉପରେ ଜାତୀୟସୌଧ ଗଢ଼ିଉଠେ । 'ଧର୍ମପଦ'ର ଆତ୍ମ-ବଳିରେ କୋଣାର୍କ ଗଢ଼ିଉଠିଲା ଆଉ ଗୋପବନ୍ଧୁଙ୍କ ଆତ୍ମଦାନରେ ଉତ୍କଳର ଜାତୀୟ-ଜୀବନ ପରିପୁଷ୍ଟ ହେବ—ଏହା ହିଁ ତାଙ୍କର ଅନ୍ତରର ଗଭୀର ବିଶ୍ୱାସ ।

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ଜଣକର ତପସ୍ୟାରେ, ଅଭୀପ୍ସାରେ ସମଗ୍ର ଜାତି ସମୃଦ୍ଧ ଓ ଉନ୍ନତ ହୁଏ । **"A soul's ambition lifted up the race"** ଏବଂବିଧ ନିର୍ମଳ ଆତ୍ମଦାନ ଓ ଜୀବନ ଯଜ୍ଞର ଗୋପବନ୍ଧୁ ଯେପରି ଏକ ମୂର୍ତ୍ତିମାନ ଅବତାର ଥିଲେ ।

ଜାତୀୟ ଜୀବନକ୍ଷେତ୍ରରେ ଗୋପବନ୍ଧୁ ଏହି ଯେଉଁ ଆତ୍ମ-ତ୍ୟାଗର ପରମ୍ପରା ସୃଷ୍ଟି କରିଅଛନ୍ତି, ତାହା ଯେ କେତେ ବିଶାଳ ଆଦର୍ଶ ତାହା ସହଜରେ ଆମ୍ଭେମାନେ ବୁଝିପାରୁ ନାହିଁ । ମନୁଷ୍ୟଚେତନାର ଯେତେବେଳେ ଯଥାର୍ଥରେ ରୂପାନ୍ତର ଘଟେ, ଅହଂଭାବର ମୂଳ ଉତ୍ପାଟିତ ହୁଏ ଭଗବତ୍-ପ୍ରୀତି ବା ଦିବ୍ୟପ୍ରେମ ହୃଦୟରେ ପ୍ରତିଷ୍ଠିତ ହୁଏ, ସେତେବେଳେ ମନୁଷ୍ୟ ଏହିପରି ଆତ୍ମ-ନିବେଦନ ପ୍ରୟାସୀ ହୁଏ । ଗୋପବନ୍ଧୁଙ୍କର ଏହି ଆତ୍ମଦାନ, ଆତ୍ମ-ବଳି ଓ ସ୍ୱାଭାବିକ ତ୍ୟାଗ କୌଣସି ପ୍ରାଣଗତ ପ୍ରେରଣାରୁ ଉଦ୍ଭୂତ ନୁହେଁ, ତାହା ଥିଲା ଈଶ୍ୱରାଳୋକ

(God Centered) । ଗୋପବନ୍ଧୁ ଜାଣିଥିଲେ ଯେ ଏହି ଆତ୍ମଦାନ ଜାତିପୁନର୍ଜୀବନର ଉତ୍‌ଥାନର ଗୋଟିଏ ଦିଗ । କିନ୍ତୁ ଏହାର ମହତ୍ତର ଦିଗଟି ହେଉଛି ଭଗବତ୍ କୃପା । ବ୍ୟକ୍ତି ନିଜକୁ ସର୍ବତୋଭାବେ ଦେଇପାରିଲେ, ନିଜର ସବୁ କିଛି ସମର୍ପଣ କରିପାରେ, ମାତ୍ର ଭଗବାନଙ୍କ କରୁଣା ବ୍ୟତୀତ ତପସ୍ୟା ସଫଳ ହୁଏ ନାହିଁ । ଜାତି ବା ସମଷ୍ଟି ମଧ୍ୟ ସେହି ଏକ ପରମପୁରୁଷଙ୍କ ସନାତନ ଅଂଶ—ସମଷ୍ଟିଗତ ଗୋଷ୍ଠୀବଦ୍ଧ ଆତ୍ମା(Group Soul) ଜାତୀୟ ଅଭ୍ୟୁତ୍‌ଥାନର ପ୍ରାରମ୍ଭରେ ଓ ଶେଷରେ ଗୋପବନ୍ଧୁ ଏହି ବାଣୀ ଶୁଣାଇଛନ୍ତି । ଏକ ଅପ୍ରାକୃତ ଦିବ୍ୟକରୁଣା ନିକଟରେ ବାରମ୍ବାର ପ୍ରାର୍ଥନା କରି ସେ ଉତ୍କଳର ଉତ୍‌ଥାନ ଓ ସର୍ବାଙ୍ଗୀନ ଉନ୍ନତି ଚାହିଁଛନ୍ତି ।

"ଉତ୍କଳ-ତନୟେ ଦିଅ ନବ ବଳ
ଉତ୍କଳ ପାଦପେ ରସମୟ ଫଳ
ଉତ୍କଳ-ସରିତେ ପବିତ୍ର ଜୀବନ
ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ
ଉତ୍କଳ-ଆକାଶେ ନବ ଯଶଃରବି
ଉତ୍କଳ-ପ୍ରକୃତି ଧରୁ ନବ ଛବି ।"

ପୁନଶ୍ଚ—

"ସଂସାର ଭୂମୁଳ ରଣପ୍ରାଙ୍ଗଣେ
ଉତ୍କଳର ଧୀନ ତନୟଗଣେ
ପଛରେ କେବେହେଁ ନ ପଡ଼ୁ ଦେବ
ଶ୍ରୀମୁଖରୁ-ଏହି ଆଦେଶ ହେବ
ଯେମନ୍ତ ଅପୂର୍ବ ଉତ୍ସାହ ସେ
ଭାରତର ମହା-ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ସେ ।"

(ଅବକାଶ ଚିନ୍ତା)

ଜାତୀୟତାର ଏହି ମହାନ୍ ମୂଳ ଉତ୍ସକୁ ଆବିଷ୍କାର କରି ଗୋପବନ୍ଧୁ ଉତ୍କଳର ଘରେ ଘରେ, ଗ୍ରାମେ ଗ୍ରାମେ "ବ୍ରାହ୍ମଣ ଶାସନ, ଶବରପଲ୍ଲୀ, କୃଷକର କୁଟୀର, ନୃପ-ଅଟ୍ଟାଳି"ରେ ଯେଉଁ ନିର୍ମଳ ପ୍ରେମର ପ୍ରଚାର କଲେ, ତାହା ଆଜି ବି ଏକ ଜୀବନ୍ତ ବସ୍ତୁ ହୋଇ ରହିଛି ।

ଆମର ମନେହୁଏ, ଏହି ଜାତିପ୍ରୀତି ଗୋପବନ୍ଧୁ ପରମ୍ପରାର ଏକ ଅବିନାଶୀ ଦିଗ ।

ପରିଶେଷରେ କୌଣସି ମହାନ୍ ବ୍ୟକ୍ତିଙ୍କ ଜୀବନ ପରମ୍ପରାର ଯେତେବେଳେ ମୂଲ୍ୟାୟନ କରିବାକୁ ହୁଏ, ସେତେବେଳେ ତାଙ୍କ ଜୀବନର ବାହ୍ୟ ଘଟନା ପ୍ରତି ଅନେକେ ଦୃଷ୍ଟି ଦେଇଥାଆନ୍ତି, ମାତ୍ର ତାହାର କୌଣସି ବିଶେଷ ଗୁରୁତ୍ୱ ବା ମୂଲ୍ୟ ନ ଥାଏ । ବାହ୍ୟ ଘଟନାବଳୀ ଅନ୍ତର୍ଚେତନାର ପ୍ରତୀକ, ପ୍ରକାଶ ଓ ଅଭିବ୍ୟକ୍ତି । ଗୋପବନ୍ଧୁ ସ୍ୱୀୟ କର୍ମମୟ ଜୀବନରେ ବହୁ କାର୍ଯ୍ୟ କରିଥିଲେ, ଦୁର୍ଗତ ଓ ଦରିଦ୍ରଙ୍କର ସେବା, ଜାତୀୟ ଶିକ୍ଷାର ପ୍ରସାର, ଇତ୍ୟାଦି—କିନ୍ତୁ ଏସବୁ କ୍ଷେତ୍ରରେ ତାଙ୍କର ପରମ୍ପରା ନାହିଁ—କେହି ରଖିପାରିଲେ ନାହିଁ । ଗୋପବନ୍ଧୁଙ୍କ ଜୀବନ ଯେଉଁ ପରମ୍ପରା ଉପରେ ପ୍ରତିଷ୍ଠିତ ହୋଇଥିଲା, ତାହା ବାହ୍ୟିକ ନୁହେ—ଆନ୍ତରିକ; ବସ୍ତୁମୂଳକ ନୁହେ—ଆଧ୍ୟାତ୍ମିକ । ମନୁଷ୍ୟ ନିଜକୁ ଯଥାର୍ଥରେ ଏକ ତ୍ୟାଗପୂତଶୁଦ୍ଧ ନିର୍ମଳ ଆଧ୍ୟାତ୍ମିକ ଜୀବନରେ ଉନ୍ନୀତ କରିପାରିଲେ ହିଁ ଗୋପବନ୍ଧୁ-ପରମ୍ପରାର ସାର୍ଥକତା ଦେଖା ଦେବ । ବ୍ୟକ୍ତିଗତ ଜୀବନ ଈଶ୍ୱର କେନ୍ଦ୍ରିତ ହେଉ, ଆତ୍ମକେନ୍ଦ୍ରିତ ହେଉ, ଅହଂଗତ ନ ହେଉ, ବସ୍ତୁଚାକଚକ୍ୟରେ ପ୍ରବୃତ୍ତ ନ ଉଠୁ, ବସ୍ତୁବିଳାସରେ ଡୁବି ନ ଯାଉ—ଏହା ହିଁ ଗୋପବନ୍ଧୁଙ୍କର ଦାୟାଦମାନେ ଏହି କଥା ବୁଝିବେ କି ?



# ଜାତିପ୍ରାଣ ଗୋପବନ୍ଧୁ

ଶ୍ରୀ ମନୋଜ ଦାସ

"There are many who, lamenting the by-gone glories of this great and ancient nation, speak as if the Rishis of old, the inspired creators of thought and civilisation, were a miracle of our heroic age, not to be repeated among degenerate men and in our distressful present. This is an error and thrice an error. Ours is the eternal land, the eternal people, the eternal religion, whose strength, greatness, holiness may be over clouded but never, even for a moment, utterly cease. The hero, the Rishi, the Saint are the natural fruits of our Indian soil, and there has been no age in which they have not been born"

*Sri Aurobindo*

(Rishi Bankim Chandra – Bandemataram
16-4-1907)

"ଏହି ମହାନ୍, ସୁପ୍ରାଚୀନ ଜାତିର ଅତୀତ ଗୌରବରାଜି କଥା ମନେ ପକାଇ ଅନେକ ଶୋଚନା ପ୍ରକାଶ କରନ୍ତି—ଯେପରି ଚିନ୍ତାଧାରା ଓ ସଭ୍ୟତାର ପ୍ରବର୍ତ୍ତକ ସେହି ଋଷିମାନେ କେବଳମାତ୍ର ଆମର ଗୌରବୋଜ୍ଜ୍ୱଳ ଅତୀତର ହିଁ ଏକ ଏକ ବିସ୍ମୟ ଥିଲେ ଏବଂ ଆଜିର ଅଧଃପତିତ ମାନବସମାଜରେ, ଏଇ ଶୋଚନୀୟ ବର୍ତ୍ତମାନରେ ସେମାନଙ୍କର ପୁନରାବର୍ତ୍ତନ ସମ୍ଭବ ନୁହେଁ । ଏହା ଭୁଲ ଏବଂ ତିନିବାର ଭୁଲ । ଶାଶ୍ୱତ ଆମର ଏହି ଭୂମି, ଶାଶ୍ୱତ ଏହାର ଅଧିବାସୀ, ଶାଶ୍ୱତ ଏହାର ଧର୍ମ—ଯାହାର ଶକ୍ତି, ମହାନତା, ଦିବ୍ୟତା ହୁଏ ତ ତିମିରାଚ୍ଛନ୍ନ ହୋଇଯାଇପାରେ; କିନ୍ତୁ କଦାପି, ଏପରିକି ମୁହୂର୍ତ୍ତକ ପାଇଁ ମଧ୍ୟ

ସମ୍ପୂର୍ଣ୍ଣଭାବରେ ଅବଲୁପ୍ତ ହୋଇ ନ ପାରେ । ଶାର, ଋଷି ଏବଂ ସନ୍ନ୍ୟାସୀବର୍ଗ ହେଉଛନ୍ତି ଆମର ଏଇ ଭାରତ-ଭୂମି-ଉଦ୍‌ଭୂତ ସ୍ୱାଭାବିକ ଫଳସ୍ୱରୂପ ଏବଂ ଏପରି କୌଣସି ଯୁଗ ନାହିଁ, ଯେତେବେଳେ ସେମାନେ ଜନ୍ମଗ୍ରହଣ କରି ନାହାନ୍ତି ।

ଶ୍ରୀ ଅରବିନ୍ଦ

(୧୯୦୭ରେ ବନ୍ଦେମାତରମ୍ ପତ୍ରିକାରେ 'ଋଷି ବଙ୍କିମଚନ୍ଦ୍ର' ଶୀର୍ଷନାମାରେ ପ୍ରକାଶିତ ନିବନ୍ଧ)

ବଙ୍କିମଚନ୍ଦ୍ରଙ୍କ . ବ୍ୟକ୍ତିତ୍ୱ ସମ୍ପର୍କରେ ଲେଖିବାକୁ ଯାଇ ଶ୍ରୀ ଅରବିନ୍ଦ ଉପର୍ଯ୍ୟୁକ୍ତ ଭୂମିକାର ଅବତାରଣା କରିଥିଲେ । ଆଧୁନିକ ଭାରତର କୋଟି କୋଟି ନରନାରୀଙ୍କ ଭିତରେ ଏଇ ଘୋଷଣାର ଆଲୋକରେ ଯେଉଁ କେତେଜଣଙ୍କର ରୂପ ଉଦ୍‌ଭାସିତ ହୋଇ ଉଠେ, ସେମାନଙ୍କ ଭିତରୁ ଗୋପବନ୍ଧୁ ଦାଶ ନିଃସନ୍ଦେହରେ ଅନ୍ୟତମ । ସେ ଆଜି ଓଡ଼ିଶାର ନବଯୁଗର ପ୍ରବର୍ତ୍ତକଭାବରେ ପୂଜିତ; କିନ୍ତୁ ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟଦର୍ଶନର କ୍ରମାଗତ ସୁଗଭୀର ଅନୁଶୀଳନ ହିଁ ତାଙ୍କୁ କେବଳ ଆଧୁନିକ ଯୁଗର ନୁହେଁ, ଏକ ଅନାଗତ 'ହିରଣ୍ମୟ' କାଳର ପୁରୋଦ୍ରଷ୍ଟା ସୂତ୍ରଧରରୂପେ ସୁପ୍ରତିଷ୍ଠିତ କରିବ ।

ଗୋଟିଏ ଆବିଷ୍କାରରେ ଆଚମ୍ବିତ ହେବାକୁ ପଡ଼େ । ବଙ୍କିମଚନ୍ଦ୍ରଙ୍କୁ ଶ୍ରୀ ଅରବିନ୍ଦ 'ଋଷି' ଆଖ୍ୟା ଦେଇଛନ୍ତି । ଭାରତର ଇତିହାସରେ ଏକ ଗଭୀର ଆଧ୍ୟାତ୍ମିକ ଓ ଐତିହାସିକ ତାତ୍ପର୍ଯ୍ୟପୂର୍ଣ୍ଣ ସମୟରେ ବଙ୍କିମଚନ୍ଦ୍ର ତାଙ୍କର 'ବନ୍ଦେ ମାତରମ୍' ମନ୍ତ୍ର ଉଚ୍ଚାରଣ କରିଥିଲେ । ତାଙ୍କ ସାହିତ୍ୟ-ସୃଷ୍ଟି ଜରିଆରେ ସେ ଯେଉଁ ଭୂମିକା ଗ୍ରହଣ କରିଥିଲେ, ତାହା ଥିଲା ଏ ଜାତିର ଭାଗ୍ୟ-ବିଧାତାହାରା ପ୍ରେରିତ । ଶ୍ରୀ ଅରବିନ୍ଦଙ୍କ ଭାଷାରେ "ଏକ ମହାଜାତି ପ୍ରତି ବା ମାନବିକତା ପ୍ରତି ଏକ ମହିମମୟ, ଉଦାତ୍ତବାଣୀ ଉଦ୍ଦିଷ୍ଟ ଥିଲା; ସେହି ବାଣୀର ଶବ୍ଦ ସଂଯୋଜନାସକାଶେ ଭଗବାନ୍ ତାଙ୍କରି ମୁଖକୁ ମନୋମିତ କରିଥିଲେ । ଏକ ଯୁଗାନ୍ତକାରୀ ଅନ୍ତର୍ଦୃଷ୍ଟି (vision) କୁ ପ୍ରକଟିତ କରିବାର ପ୍ରୟୋଜନ ଥିଲା; ବିଧାତା ତାଙ୍କରି ନୟନକୁ ହିଁ ପ୍ରଥମେ ସେଥିପ୍ରତି ଉନ୍ମୀଳିତ କରିଦେଇଥିଲେ ।" 'ଦେବୀ ଚୌଧୁରାଣୀ', 'ଆନନ୍ଦମଠ', 'ଧର୍ମତତ୍ତ୍ୱ'

'କୃଷ୍ଣଚରିତ' ଇତ୍ୟାଦି ଅବିସ୍ମରଣୀୟ ସାହିତ୍ୟକୃତି-ଜରିଆରେ ଇଙ୍ଗିତ-କୌଶଳରେ ବଙ୍କିମଚନ୍ଦ୍ର ଭାରତୀୟ ସ୍ୱାଧୀନତା-ସଂଗ୍ରାମର ଉପଯୁକ୍ତ ଯୋଦ୍ଧାର ଯେଉଁ ବର୍ଣ୍ଣନା ଦେଇଛନ୍ତି, ତାକୁ ବିଶ୍ଳେଷଣ କରି ଶ୍ରୀ ଅରବିନ୍ଦ ତିନୋଟି ଗୁଣବିଭାବରେ ନିର୍ଦ୍ଦିଷ୍ଟ କରି ଦେଇଛନ୍ତି । ବର୍ତ୍ତମାନ ଆଚମ୍ବିତ ତଥା ଆନନ୍ଦାଭିଭୂତ ହେବାକୁ ହୁଏ ଏଇ ଆବିଷ୍କାରରେ । ଉପର୍ଯ୍ୟୁକ୍ତ ତିନୋଟିଯାକ ମାତୃ-ଶକ୍ତି-ସଞ୍ଜାତ ଗୁଣ ସର୍ବାଙ୍ଗୀନଭାବରେ ଉପସ୍ଥିତ ଥିଲା ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱରେ । ବଙ୍କିମଚନ୍ଦ୍ରଙ୍କ ଅନ୍ତର୍ଦୃଷ୍ଟିରେ ସ୍ୱଦେଶୀ-ଯୋଦ୍ଧାର ପ୍ରଥମ ଯୋଗ୍ୟତା ହେଲା ମାତୃଭୂମିର ମୁକ୍ତିସକାଶେ ପୂର୍ଣ୍ଣତୋଭାବେ ଆତ୍ମାହୁତିର ପ୍ରସ୍ତୁତି । ମୁକ୍ତିଯୁଦ୍ଧର ସୈନିକ ହେବା ଗୁହି ରାଜନୈତିକ ବୈରାଗୀ । "ଯିଏ ନିଜକୁ ବା ନିଜର ସ୍ତ୍ରୀ, ସନ୍ତାନସନ୍ତତି ଅଥବା ବସ୍ତୁବିଶେଷକୁ ଦେଶ ଅପେକ୍ଷା ଅଧିକ ଭଲପାଏ, ସେ ଜଣେ ଦରିଦ୍ର ଓ ଅପରିଣତ ଦେଶପ୍ରେମୀ; ତାହାଦ୍ୱାରା ମହାନ୍ କାର୍ଯ୍ୟ ସମ୍ପନ୍ନ ହୋଇ ପାରିବ ନାହିଁ ।" ଏହି ବୈରାଗୀ-ବ୍ୟକ୍ତିତ୍ୱର ସର୍ବୋତ୍ତମ ବିକାଶ ଗୋପବନ୍ଧୁଙ୍କ ଜୀବନରେ ସମ୍ଭବ ହୋଇଥିଲା । ଦେଶ ଅପେକ୍ଷା ଆଉ କିଛି ହିଁ ଯେ ତାଙ୍କର ଅଧିକ ପ୍ରିୟ ନ ଥିଲା—ଏ କଥାର ସେ ଆକ୍ଷରିକ ପ୍ରମାଣ ଦେଇଯାଇଛନ୍ତି କୋଟିଏ ପୁତ୍ର ସକାଶେ ଗୋଟିଏ ପୁତ୍ରକୁ ରୋଗଶଯ୍ୟାରେ ଓ ମୃତ୍ୟୁମୁଖରେ ବିସର୍ଜନ ଦେଇଯାଇ । ସଚରାଚର 'କର୍ମଯୋଗୀ' ବୋଲି ଆଜିକାଲି କଥାବାର୍ତ୍ତା, ବକ୍ତୃତା ବିବୃତିରେ ଯେଉଁ ସ୍ୱାର୍ଥସର୍ବସ୍ୱ, ଆପାତ-ବୃହତ୍ କ୍ଷୁଦ୍ର ରାଜନୀତିକମାନଙ୍କୁ ବୁଝାଯାଏ, ସେଭଳି ଅର୍ଥଠୁଁ ବହୁ ବ୍ୟବଧାନରେ ଗୋପବନ୍ଧୁ ଥିଲେ ଯୋଗନିର୍ଦ୍ଦିଷ୍ଟ ସଜ୍ଞାନୁଯାୟୀ କର୍ମଯୋଗୀ । ଅନ୍ତତଃ କର୍ମଯୋଗର ସେହି ଆଦର୍ଶ ହିଁ ଥିଲା ତାଙ୍କ ଅନ୍ତଃସତ୍ତ୍ୱର ପ୍ରେରଣା । ନିଜର ବହିଃସତ୍ତ୍ୱକୁ ନିୟୋଗ କରି ସେ ସାମାଜିକ ଓ ରାଜନୈତିକ ସମସ୍ତ ଗୁରୁଦାୟିତ୍ୱ ତୁଲାଉଥିଲେ; କିନ୍ତୁ ତତ୍‌ସମ୍ଭୂତ ସୁଖଦୁଃଖର ପ୍ରତିକ୍ରିୟାରୁ ନିଜକୁ ସମ୍ପୂର୍ଣ୍ଣ ମୁକ୍ତ ରଖିବାକୁ ସେ କିପରି ସଚେତନ ଥିଲେ, ତାହା ଏଇଥିରୁ ସ୍ପଷ୍ଟ—

"ଆବର୍ଜନାମୟ ଏହି ସଂସାର-ଜଞ୍ଜାଳେ
କେବେ ପ୍ରପୀଡ଼ିତ ମୋର ନ ହେଉ ମାନସ,
କଳ୍ପନାର ସୁଖରାଜ୍ୟେ ଦେଖେ କାଳେ କାଳେ
ସ୍ୱର୍ଗୀୟ ସୁଷମା ଆଉ ସ୍ୱର୍ଗୀୟ ରହସ୍ୟ ।"

ବଙ୍କିମଚନ୍ଦ୍ର-ନିରୂପିତ ଦ୍ୱିତୀୟ ଗୁଣ ହେଉଛି ଆତ୍ମ-ଶୃଙ୍ଖଳା ଓ ସଂଗଠନ ଶକ୍ତି । ଏ ବିଷୟରେ କୌଣସି ଟୀକା ଦେବା ବାହୁଲ୍ୟ ମାତ୍ର । ଏହାର ସାକ୍ଷ୍ୟ ବହନ କରେ ଓଡ଼ିଶାରେ ସଂଗଠିତ ବ୍ୟାପକ ଅସହଯୋଗ ଆନ୍ଦୋଳନର ଇତିହାସ ଓ ଓଡ଼ିଶାର ଜନଜୀବନକୁ ସମାନ୍ତର-ଭାବେ ପ୍ରଭାବିତ କରି ଚାଲିଥିବା ଏକ ବିଶାଳ ଅନୁଷ୍ଠାନ ।

ତାହା ପରେ ଶେଷ ଗୁଣ । ତାହା ହେଲା ସ୍ୱାଦେଶିକ କାର୍ଯ୍ୟ-କଳାପକୁ ଧର୍ମ-ପ୍ରେରଣାଦ୍ୱାରା ସଞ୍ଜୀବିତ କରିବା 'ଦେଶପ୍ରେମର ଧର୍ମ ।' ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଦଲିଲରେ ଦେଖିବାକୁ ମିଳେ, ବହୁ ଶକ୍ତିମାନ୍ ମନୀଷୀ, ତ୍ୟାଗୀ, ଦେଶପ୍ରେମୀଙ୍କର ଭାସ୍ୱର ସ୍ୱାକ୍ଷର । କିଏ ବା ସ୍ୱରାଜ୍ୟ-ସାଧନକୁ ଗ୍ରହଣ କରିଥିଲେ ନୈତିକ ଦାୟିତ୍ୱଭାବରେ; କିଏ ବା ସ୍ୱାଧୀନତାର ସାମାଜିକ ଓ ରାଜନୈତିକ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ; କିନ୍ତୁ ମୁଷ୍ଟିମେୟ ମହାପୁରୁଷ ଏହା ପଛରେ ଥିବା ବାସ୍ତବ ଆଧ୍ୟାତ୍ମିକ ପ୍ରେରଣା ସମ୍ବନ୍ଧରେ ସଚେତନ ହୋଇପାରିଥିଲେ । ଏହା ଯେ କେତେ ବଡ଼ ପାର୍ଥକ୍ୟ, ତାହା ବୃହତ୍ତର କ୍ଷେତ୍ରରେ ଆଜି ବି ଉପଲବ୍ଧ ହୋଇନାହିଁ । ଶ୍ରୀ ଅରବିନ୍ଦଙ୍କ ଦିବ୍ୟଦୃଷ୍ଟିରେ ଭାରତର ସ୍ୱାଧୀନତା ଆନ୍ଦୋଳନ ଥିଲା ସାରା ମାନବଜାତିର ବିଧିନିର୍ଦ୍ଦିଷ୍ଟ ଏକ ଭବିତବ୍ୟ ଦିଗରେ ଅନିବାର୍ଯ୍ୟ ପଦକ୍ଷେପ । ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଏହି ପ୍ରତୀକ-ଚରିତ୍ର ସମ୍ପର୍କରେ ଗୋପବନ୍ଧୁ କେତେଦୂର ଅବହିତ ଥିଲେ, ତାହା ଭାବିଲେ ଚମତ୍କୃତ ହେବାକୁ ହୁଏ । ଯେଉଁ ଚେତନାରେ ସେ ଭାରତର ସ୍ୱାଧୀନତାକୁ ଜଗତର କଲ୍ୟାଣଭାବରେ ବୁଝିପାରିଥିଲେ, ସେହି ଚେତନାରେ ସେ ତାଙ୍କର ମହାଜାତୀୟ ଭାବଧାରା ସହିତ ଉତ୍କଳପ୍ରୀତିର ସ୍ୱତଃସ୍ଫୂର୍ତ୍ତ ସାମଞ୍ଜସ୍ୟର ସନ୍ଧାନ ପାଇଥିଲେ—

"ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ,
ଭାରତେ ସ୍ୱରାଜ୍ୟ ଜଗତ କଲ୍ୟାଣ
ଜଗତ-ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।"

ଭାରତୀୟ ସ୍ୱାଧୀନତା-ସଂଗ୍ରାମନିହିତ ଆଧ୍ୟାତ୍ମିକ ରହସ୍ୟର ସନ୍ଧାନ ସିଏ ଯେ କେତେ ସ୍ପଷ୍ଟଭାବରେ ପାଇଥିଲେ ଏବଂ କେତେ ସୁଦୃଢ଼

ପ୍ରଜ୍ଞାନ୍ତର ଭିତ୍ତିଭୂମି ଉପରେ ସେ ତାଙ୍କର ସହକର୍ମୀମାନଙ୍କୁ ସଂଗ୍ରାମ-ସକାଶେ ସଜ୍ଜିତ ହେବାକୁ ଆହ୍ୱାନ ଦେଇଥିଲେ, ତାହାର ଉଦାହରଣ ଦେଖିବାକୁ ମିଳେ ନିମ୍ନୋକ୍ତ ପଙ୍‌କ୍ତିରେ—

"ନ ଅଟଇ କର୍ମ ନେତାର ଅଭାବେ
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ,
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।"

ଉତ୍କଳ ଯେବେ କାହା ସହିତ ଯୁଦ୍ଧ କରିବାକୁ ଯାଏ, ତେବେ ସେଥିରେ ନେତୃତ୍ୱ ଦିଅନ୍ତି ଭଗବାନ (କାଞ୍ଚିବିଜୟ) । ପୁଣି ଉତ୍କଳକୁ ଯଦି କେହି ଯୁଦ୍ଧ କରିବାକୁ ଆସେ, ତେବେ ସେ ହୁଏ ଭଗବତ୍‌-ଭାବଦ୍ୱାରା ବିଜିତ (ଯଥା-ଅଶୋକ) ।

ଆନ୍ତର୍ଜାତିକତା, ମହାଜାତୀୟତା ତଥା ନିଜର ଜନ୍ମଭୂମି ଉତ୍କଳ ପ୍ରତି ମମତା—ଏ ତିନି ଭାବଧାରାର ପ୍ରାକୃତିକ ତ୍ରିବେଣୀସଙ୍ଗମରେ ଶୁଦ୍ଧପୂତ ବ୍ୟକ୍ତିତ୍ୱ ଗୋପବନ୍ଧୁଙ୍କ ସହିତ କ୍ୱଚିତ୍ କେହି ତୁଳନୀୟ ହୋଇଅଛନ୍ତି । ସ୍ୱରାଜ୍ୟର ଆଦର୍ଶ ଏକ ଆନ୍ତର୍ଜାତିକ ଆଦର୍ଶ । କୌଣସି ଦେଶସକାଶେ ତାହା ଅପ୍ରଯୁଜ୍ୟ ନୁହେଁ । କିନ୍ତୁ ଜାତୀୟ ନେତା ତାକୁ ହିଁ ବୁଝାଏ—ଯେ ନିଜର ପରମ୍ପରା ଓ ଐତିହ୍ୟ ସହିତ ଯେ କୌଣସି ଆନ୍ତର୍ଜାତିକ ଭାବଧାରାର ସାବଲୀଳ ସାମଞ୍ଜସ୍ୟ ବିଧାନ କରିପାରେ । ଗୋପବନ୍ଧୁ ତାହା ହିଁ କରିଛନ୍ତି । ଭାରତୀୟ ପରମ୍ପରାର ଅନୁଶୀଳନ କରି, ତହିଁରୁ ଆହୃତ ଜ୍ଞାନକୁ ସେ ସ୍ୱାଧୀନତା ଆନ୍ଦୋଳନରେ ପ୍ରୟୋଗ କରିବାକୁ ଚାହିଁଥିଲେ । ଭାରତର ଯୁଦ୍ଧ ଧର୍ମ-ଯୁଦ୍ଧ; ତହିଁର ପୁରୋଧା ସ୍ୱୟଂ ଭଗବାନ । ପୁଣି ଭାରତର ଏକତାର ସ୍ୱରୂପ ବଡ଼ ବିଚିତ୍ର । ବହୁ ରାଜ୍ୟର ନିଜସ୍ୱ ବିଶେଷତ୍ୱର ସମାହାରରେ ବିଶାଳ ଭାରତବର୍ଷର ଅନବଦ୍ୟ ଏକତ୍ୱ । ବିଧାତାର ନିର୍ଦ୍ଦେଶରେ ଗୋପବନ୍ଧୁ ଜନ୍ମଗ୍ରହଣ କରିଥିଲେ ଉତ୍କଳଭୂମିରେ । ତେଣୁ ଉତ୍କଳର ସ୍ୱକୀୟ ବୈଶିଷ୍ଟ୍ୟକୁ ଜାଗରିତ କରି ସ୍ୱାଧୀନ-ସମୃଦ୍ଧ ଭାରତବର୍ଷ ଗଠନରେ ଅବଦାନ ଦେବା ତାଙ୍କର ଆଭିମୁଖ୍ୟ ଥିଲା । ଉତ୍କଳ-ଇତିହାସର ଗୌରବଦୀପ୍ତ ନାମଗୁଡ଼ିକୁ (ଜଗନ୍ନାଥ ଦାସ, ବଳରାମ ଦାସ, ଅନଙ୍ଗଭୀମ

ଦେବ, ପୁରୁଷୋତ୍ତମ ଦେବ, ଉପେନ୍ଦ୍ରଭଞ୍ଜ, ସାମନ୍ତ ଚନ୍ଦ୍ରଶେଖର, ପଣ୍ଡିତ ହରିହର ଦାଶ ଶର୍ମା) ସେ ତାଙ୍କର କେତୋଟି ଅମର କବିତାର ବିଷୟବସ୍ତୁ କରିଛନ୍ତି । ରାଜ୍ୟ ସୀମାନ୍ତବର୍ତ୍ତୀ ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷାର ସୁରକ୍ଷାନିମନ୍ତେ ସେ ଯେଉଁ ଉଦାତ୍ତସ୍ୱର ତୋଳିଥିଲେ, ତାହା ତ ଥିଲା ଗଭୀର ବୈଜ୍ଞାନିକ ଓ ବାସ୍ତବ-ଦୃଷ୍ଟିକୋଣସଞ୍ଜାତ-ଭାବପ୍ରବଣତାର ବହୁ ଊର୍ଦ୍ଧ୍ୱରେ । କର୍ତ୍ତୃପକ୍ଷଙ୍କୁ ଚିଠିରେ, ଉତ୍କଳସମ୍ମିଳନୀ (୧୯୧୯)ର ସଭାପତି-ଅଭିଭାଷଣରେ ସେ ଏହି ଗମ୍ଭୀର ଗବେଷକସୁଲଭ ସିଦ୍ଧାନ୍ତ ହିଁ ବ୍ୟକ୍ତ କରୁଥିଲେ ! "ମାତୃଭାଷା ମନୁଷ୍ୟ-ହୃଦୟର ସ୍ୱାଭାବିକ ପ୍ରବାହ । ତାହାକୁ ସେ ଭାଷାରୁ ବଞ୍ଚିତ କରିବା ଅର୍ଥ ତାହାର ହୃଦୟର ଗତିରୋଧ କରିବା, ହୃଦୟର ଦ୍ୱାରମୁଖ ବନ୍ଦ କରିବା ଏବଂ ଅନ୍ତରର ସ୍ନିଗ୍ଧ—ଜଳ କାଟିଦେବା ।"

ମହାପୁରୁଷ ଗୋପବନ୍ଧୁ ଏହିପରି ତାଙ୍କ କର୍ତ୍ତବ୍ୟର ତିନି ଧାରା ଭିତରେ ସାମଞ୍ଜସ୍ୟ ବିଧାନ କରୁଥିଲେ ଏବଂ ସମସ୍ତ ଉତ୍କଳବାସୀଙ୍କର ଦୃଷ୍ଟିକୋଣ ଯେପରି "ଜାତୀୟମମତା ଓ ବିଶ୍ୱଜନପ୍ରୀତି"ର ଦୂର ଦିଗ୍‌ବଳୟଯାଏ ପ୍ରସାରିତ ହେବ, ତାହାହିଁ କାମନା କରୁଥିଲେ ।

ଜନ୍ମଗତ ପ୍ରତିଭାର ଅଧିକାରୀରୂପେ ମହାକବି ଆଖ୍ୟା ପାଇବା ଏକ କଥା ଏବଂ ଜାତୀୟକବି ବା ସ୍ୱାଦେଶିକତାର ସାହିତ୍ୟିକ ହେବା ଅନ୍ୟ ଏକ କଥା । ଏଇ ବିଶିଷ୍ଟ ସମ୍ମାନର ହକଦାର ଏକମାତ୍ର ସେଇ, ନିଜ ଜୀବନ ଓ ସାହିତ୍ୟଭିତରେ ବ୍ୟବଧାନ ଯାହାଭିତରେ କମ୍ ଥାଏ । ଦୁର୍ନୀତିର ନର୍ଦ୍ଦମାରେ ଅବଗାହନ କରି କରି ମିଛ ଉପରେ ଅନର୍ଗଳ ଗଳା ଫଟାଉଥିବା ବକ୍ତୃତ ବାଗୀଶର ବଚନ ଯେପରି କାହାରି ହୃଦୟକୁ ସ୍ପର୍ଶ କରି ପାରେ ନାହିଁ, ଖିରୁତାର କମ୍ବଳଭିତରେ ଥରିହରି ହେଉଥିବା କବିର ରଣାଙ୍ଗନକୁ ଲମ୍ଫ ଦେବାର ହୁଙ୍କାର ସେହିପରି ବ୍ୟର୍ଥ ଆସ୍ଫାଳନ ଛଡ଼ା ଆଉ କିଛି ନୁହେଁ । ଗୋପବନ୍ଧୁ ହେଲେ ସ୍ୱାଦେଶିକତାର ଯଥାର୍ଥ କବି—ଯେହେତୁ ତାଙ୍କ କବିତାର ସମସ୍ତ ବକ୍ତବ୍ୟକୁ ସେ ନିଜ ଜୀବନରେ ପ୍ରତିଫଳିତ କରୁଥିଲେ; ଅଥବା ତାଙ୍କ ନିଜ ଜୀବନର ବାସ୍ତବ ମହତ୍ତ୍ୱ ହିଁ ତାଙ୍କ କବିତାରେ ପ୍ରତିଫଳିତ ହୋଇଛି ।

ମହାନ୍ ଗୋପବନ୍ଧୁଙ୍କର ସର୍ବଶ୍ରେଷ୍ଠ କବିକୃତି ହେଉଛି 'ମାରବି' ଶୀର୍ଷକ କବିତାଟି । ସମସ୍ତ ବାହୁଲ୍ୟମୋହରୁ ମୁକ୍ତ ରହି; ନିଃସଙ୍କୋଚରେ

ଏ ପ୍ରବନ୍ଧର ଲେଖକ ଏ କଥା ଲେଖିଛନ୍ତି ଯେ 'ନୀରବ' ପର୍ଯ୍ୟାୟର କବିତା କେବଳ ଭାରତୀୟ ସାହିତ୍ୟରେ ନୁହେଁ, ବିଶ୍ୱ ସାହିତ୍ୟରେ ବିରଳ । ଏହି କ୍ଷୁଦ୍ର ରଚନାର ଶେଷାଂଶରେ 'ନୀରବ'ର ଆଲୋଚନା କରିବା ଦୁଃସାହସ ହେବ । ପ୍ରଶାନ୍ତ ଦିବ୍ୟାନୁଭୂତିପ୍ରଣୋଦିତ ଏହି କବିତାର ସାହିତ୍ୟ ମୂଲ୍ୟ ସ୍ୱତନ୍ତ୍ରଭାବେ ବିଚାର୍ଯ୍ୟ; କିନ୍ତୁ :—

"ନୀରବେ ପ୍ରସରେ କ୍ଷଣେ ଦିବ୍ୟଜ୍ୟୋତି ଧାରା,
ନୀରବେ ଆକାଶେ ଉଦେ ରବି-ଶଶୀ-ତାରା,
ନୀରବେ ବଢ଼ଇ ତରୁଲତା ମହୀଧର
ନୀରବ ନିଖିଳ ବିଶ୍ୱ ନିଗୂଢ଼ ମନ୍ତର ।"···

ଏହି ଧାଡ଼ିଗୁଡ଼ିକର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ସମ୍ପର୍କରେ ଇଙ୍ଗିତରେ ସର୍ବଶ୍ରେଷ୍ଠ ପରିଚୟ ଦେବାସକାଶେ ୧୯୫୭ ନବବର୍ଷ ଉପଲକ୍ଷେ ଦିବ୍ୟଜନନୀ ଦେଇଥିବା ବାର୍ତ୍ତାଟି ଉଲ୍ଲେଖ କରିବାର ଆକର୍ଷଣ ଏଡ଼ି ହେଉ ନାହିଁ । ଶ୍ରୀମାଙ୍କ ବାର୍ତ୍ତା—"ସର୍ବଶ୍ରେଷ୍ଠ ବିଜୟଗୁଡ଼ିକ ସବୁଠୁଁ କମ୍ କୋଳାହଳପୂର୍ଣ୍ଣ । ଏକ ନୂତନ ବିଶ୍ୱର ଆବିର୍ଭାବ ଡିଣ୍ଡିମ ପିଟି ଘୋଷିତ ହେବ ନାହିଁ ।" ପରବର୍ତ୍ତୀ ସମୟରେ ଶ୍ରୀମା ଅନ୍ୟ ଏକ ବାର୍ତ୍ତାର ଶେଷରେ କହିଥିଲେ, "ନୀରବତା, ନୀରବତା, ନୀରବତା । ଏକମାତ୍ର ନୀରବତା ଭିତରେ ହିଁ ମହିମାମୟ କିଛି କରାଯାଇ ପାରେ ।"

କେଉଁ ଆଶ୍ଚର୍ଯ୍ୟ ସ୍ନିଗ୍ଧ ଚେତନାର କରୁଣାମୟ ସ୍ପର୍ଶ ପାଇ ଗୋପବନ୍ଧୁ 'ନୀରବ' କବିତାଟି ଲେଖିଥିଲେ, ଅନେକ ପାଠକ ବର୍ତ୍ତମାନ ତାହା ବୁଝିପାରିଲେ ବୋଲି ମୋର ବିଶ୍ୱାସ ।

———

# ଅବକାଶ-ଚିନ୍ତା ଓ କବି ଗୋପବନ୍ଧୁ

ଅଧ୍ୟାପକ ରବୀନ୍ଦ୍ରକୁମାର ପଣ୍ଡା

ବୈଷ୍ଣବପଦ୍ୟାବଳୀ ଏବଂ କେତେକ ଅଦିରସାଶ୍ରିତ ସଙ୍ଗୀତକୁ ବାଦ ଦେଲେ ଓଡ଼ିଆସାହିତ୍ୟରେ ଖଣ୍ଡକବିତାର ଜନ୍ମଜାତକ ମାତ୍ର ୭୦।୮୦ ବର୍ଷର ବୋଲି ସ୍ୱଚ୍ଛନ୍ଦରେ କୁହାଯାଇପାରେ । ଇଂରେଜୀ ସାହିତ୍ୟ-ପ୍ରଭାବିତ କବିତା ରଚନାରୀତି ରାଧାନାଥଙ୍କଠାରୁ ଆରମ୍ଭ ହୋଇଥିଲେହେଁ ଏହାର ବିକଶିତ ରୂପ ଅନେକ ପରେ ଦୃଷ୍ଟିପଥକୁ ଆସେ । ସାହିତ୍ୟର ଉକ୍ତ ବିଭାଗରେ ଯେଉଁମାନେ ସାଧନାର ସ୍ୱାକ୍ଷର ଅଙ୍କିତ କରିଛନ୍ତି ସେମାନଙ୍କ ମଧ୍ୟରେ କବି ଗୋପବନ୍ଧୁଙ୍କର ଯେ ଏକ ସମ୍ମାନମୟ ଆସନ ପ୍ରତିଷ୍ଠିତ ହୋଇଛି ଏହା ନିଃସନ୍ଦେହ । ପରବର୍ତ୍ତୀ ରାଜନୈତିକ ଜୀବନର ଜଞ୍ଜାଳ କବି ଗୋପବନ୍ଧୁଙ୍କ ମାନସରେ ଯେଉଁ ଚିନ୍ତା-ବିକ୍ଷୋଭ ସୃଷ୍ଟି କରିଥିଲା ତା'ର ପ୍ରତ୍ୟକ୍ଷ ଅଥବା ପରୋକ୍ଷ ଅଭିବ୍ୟକ୍ତି 'କାରାକବିତା' 'ବନ୍ଦୀର ସ୍ୱଦେଶ ଚିନ୍ତା' ଇତ୍ୟାଦିରେ ଫୁଟିଉଠି କବିକୃତିର ନିରୋଳ ସ୍ୱଚ୍ଛତାକୁ ଅନେକ ସମୟରେ ଯେପରି ବ୍ୟାହତ କରିଛି, ସେଥିରୁ ତାଙ୍କ ସରସ କବି-ଚିତ୍ତର ସ୍ପଷ୍ଟ ରୂପାୟନ ଲାଭ କରିବା ଅସମ୍ଭବ ନ ହେଲେ ମଧ୍ୟ ପ୍ରମାଦଶୂନ୍ୟ ହୋଇପାରେ ନାହିଁ । କବିଙ୍କ ଜୀବନୀରୁ ଜଣାଯାଏ, ବାଲ୍ୟକାଳରୁ ହିଁ କବିତା ରଚନା କରିବା ଏବଂ କବିତା-ରଚନା ଉପଯୋଗୀ ସ୍ଥିର ଅନ୍ତର୍ଦୃଷ୍ଟି ବରଣ କରିବାର ପ୍ରବୃତ୍ତି ତାଙ୍କଠାରେ ପ୍ରଚ୍ଛନ୍ନ ରହିଥିଲା । କବି ରାଧାନାଥଙ୍କୁ ସମାଲୋଚନା କରିବା ପଛରେ ଏହି ପ୍ରବୃତ୍ତିହିଁ ତାଙ୍କଠାରେ ବିଦ୍ୟମାନ ଥିବାର ସହଜରେ ଅନୁମାନ କରାଯାଇପାରେ । ବାଲ୍ୟ, କୈଶୋର ତଥା ଯୌବନରେ ଅନୁଭୂତ ସ୍ଥାନ, କାଳ ଓ ପାତ୍ରର ପ୍ରଭାବ ତାଙ୍କ କବି-ଚିତ୍ତରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା, ସମ୍ବେଦନଶୀଳ ପ୍ରାଣରେ ଯେଉଁ ଆବେଗର ଝଙ୍କାର ତୋଳିଥିଲା ତାହା ହିଁ କବିତାର ସରସ' ସଫଳ ଆଦ୍ୟ ଉନ୍ମେଷ ବରଣ କଲା 'ଅବକାଶ-ଚିନ୍ତା'ରେ । ତେଣୁ କେବଳ ଓଡ଼ିଆସାହିତ୍ୟରେ କବିତାର ନିରାଡ଼ମ୍ବର, ସହଜ, ନିରାଭରଣ ଅନ୍ତଃସୌନ୍ଦର୍ଯ୍ୟ ଅଥବା ଭାବ-

ସୌକର୍ଯ୍ୟ ହେତୁ ନୁହେଁ; କବିଙ୍କର ସମଗ୍ର ସାହିତ୍ୟିକ-ଜୀବନର ସଫଳ ସମ୍ଭାବନାର ବଳିଷ୍ଠ ଉଦ୍ଘାଟନା 'ଅବକାଶ-ଚିନ୍ତା' ଉପରେ ପ୍ରକାଶ କରିପାରିଛି, ତାହା ଆଲୋଚନା ସାପେକ୍ଷ । କବି-ମାନସର ଦିକ୍‌ଚକ୍ରବାଳରେ ଫୁଟି ଉଠିଛି ଭବ-ଭାବନାର ଲୋହିତ ବର୍ଣ୍ଣୋଜ୍ଜ୍ୱଳ, ତାହା ହିଁ ସମଧିକ ଦର୍ଶନୀୟ ।

ଜୀବନର ବିଭିନ୍ନ ଅବସ୍ଥାରେ ଭିନ୍ନ ଭିନ୍ନ ଦୃଶ୍ୟ ଦର୍ଶନ ବହୁ ମହତ୍‌ପ୍ରାଣ ବ୍ୟକ୍ତିଙ୍କର ସଂସ୍ପର୍ଶର ପ୍ରତିକ୍ରିୟା, ସାମାଜିକ ପରିବେଶରେ ନିଜସ୍ୱ ଦୃଷ୍ଟିକୋଣରୁ ବିଚାର, ବିଷୟର ଆବବୋଧଲାଗି ଏକାଗ୍ର, ଅବିହିତଚିତ୍ତତା—ଏ ସମସ୍ତ ଶୋଭନ, ସୁନ୍ଦର ଯାନ୍ତରେ ଫୁଟି ଉଠିଛି 'ଅବକାଶ-ଚିନ୍ତା'ର ପ୍ରତ୍ୟେକଟି କବିତାରେ । 'କବିତା'ଠାରୁ ଆରମ୍ଭ କରି 'ମୋ ନାମ' ଓ 'କାଙ୍କଣ ଗଛ' ପର୍ଯ୍ୟନ୍ତ ପ୍ରତ୍ୟେକଟି କ୍ଷେତ୍ରରେ ଯେପରି ବିଚ୍ଛୁରିତ ହୋଇ ରହିଛି ଶିକ୍ଷଣୀୟ, ଲକ୍ଷଣୀୟ, ଦର୍ଶନୀୟ ଉପାଦାନ । ସେଗୁଡ଼ିକୁ ତୋଳି ଧରିବାପାଇଁ ସମ୍ବେଦନଶୀଳ, ମମତାମୟ, ଏକ ବିଶାଳ ହୃଦୟ ସତେ ଯେପରି କୌଣସି ବାଧା, ବନ୍ଧନକୁ ନ ମାନି ଉଚ୍ଛଳ ଆବେଗରେ ଧାଇଁ ଆସିଛି । ଅଧିକାଂଶ ସ୍ଥଳରେ ସବୁକିଛିକୁ ନିଜସ୍ୱ ଜୀବନର ଏକ ଅଂଶଭାବରେ ପରିକଳ୍ପନା କରିବା ସଙ୍ଗେ ସଙ୍ଗେ ଏକ ଅନାବିଳ ଆତ୍ମୀୟତାରେ ଏକୀଭୂତ କରାଇ ନେବା ଏବଂ ପ୍ରତ୍ୟେକ ଟିଷୟରୁ ଅମୃତ, ଆନନ୍ଦ ଓ ଶାଶ୍ୱତର ଆହ୍ୱାନ ଶୁଣିବାକୁ ଚେଷ୍ଟା କରିବାର ଯେଉଁ ସହଜ କାମନା କବିତାଗୁଡ଼ିକରେ ପ୍ରକାଶିତ ହୋଇଛି, ତାହା ହିଁ କବି ଗୋପବନ୍ଧୁଙ୍କର ସ୍ୱାତନ୍ତ୍ର୍ୟର ପରିଚୟ । ପାରମ୍ପରିକ ଧାରଣା, ସଂସ୍କାର, ବିଶ୍ୱାସ, ଚଳଣି ଓ ଆଗ୍ରହ, ବିଗ୍ରହ ସହିତ କବି-ଚିତ୍ତର ସହଜ ସମନ୍ୱୟ ଗୋପବନ୍ଧୁଙ୍କ ବ୍ୟକ୍ତିଗତ ଜୀବନର ଶୁଦ୍ଧତା ବା ନିରାଡ଼ମ୍ବରଭାବର ଅନ୍ୟତମ ଅଭିବ୍ୟକ୍ତି ହୋଇପାରେ, ମାତ୍ର ଏହାର କୌଣସି ସ୍ୱତନ୍ତ୍ର ନିର୍ଦ୍ଦର୍ଶନ ନାହିଁ । ଏ ପ୍ରକାର ଭାବ-ଭାବନା କବିଭାର ପୋଷକତା ନ କରି ଅନେକ କ୍ଷେତ୍ରରେ କବିଙ୍କର ଅସହାୟତାର ପରିଚୟ ବହନ କରିଛି ।

ଅବକାଶ-ଚିନ୍ତାର ପ୍ରତ୍ୟେକଟି କବିତାର ଆଦର୍ଶ-ମାନବାବାଦ । ସମଗ୍ର ବିଶ୍ୱ ସୃଷ୍ଟିର ମଙ୍ଗଳ କାମନା କରିବା ସଙ୍ଗେ ସଙ୍ଗେ କ୍ରିୟାଶୀଳ-

ଭାବରେ ମଙ୍ଗଳ ସମ୍ପାଦନ କରିବା କେବଳ ମାନବଦ୍ୱାରା ହିଁ ସମ୍ଭବ । ସେଥିପାଇଁ "ସବାର ଉପରେ ମାନୁଷ ସତ୍ୟ"—ଏହି ଭାବଟି କବିଙ୍କୁ ବହୁଭାବରେ ଅନୁପ୍ରାଣିତ କରିଥିବାର ଜଣାଯାଏ । ଆଧ୍ୟାତ୍ମିକ ଧ୍ୟାନ, ଧାରଣା କଥା, ପ୍ରକୃତିର ନିତ୍ୟ ପରିବର୍ତ୍ତନଶୀଳ ରୂପ, ଈଶ୍ୱରର ଐଶ୍ୱର୍ଯ୍ୟକଥା, ସମାଜଜୀବନର ରୀତି, ନୀତି, ବିଶ୍ୱାସ ଓ ବିଚାର କଥା, — ଏ ସବୁକିଛି ମାନବର ଅବବୋଧ, ଚିନ୍ତା ଓ ଚେତନାର ଅପେକ୍ଷା ରଖେ । ସବୁଠାରୁ ସତ୍ୟ, ସର୍ବୋପରି ମହିମାମୟ ଏବଂ ପରିଶେଷରେ ସହାନୁଭୂତି ଏବଂ ସମବେଦନାର ପାତ୍ର ଏହି ମଣିଷ ଜାତି । ଏ ଜାତି ପ୍ରତି ପ୍ରଥମରୁ କବିଙ୍କର ଶ୍ରଦ୍ଧା ଅସୀମ । ଏହି ଶ୍ରଦ୍ଧା, ଏହି ମମତ୍ୱବୋଧ ମାଧ୍ୟମରେ କବି ସମଗ୍ର ସୃଷ୍ଟିକୁ ଏକ ସ୍ନେହମୟ, ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟିରେ ଦର୍ଶନ କରିବାକୁ ଚେଷ୍ଟା କରିଛନ୍ତି । ସେଥିପାଇଁ ସୃଷ୍ଟିରେ କେଉଁଠି କିଛି ବିପର୍ଯ୍ୟୟ, ବିଚ୍ୟୁତି ଘଟିବାର ଲକ୍ଷ୍ୟ କରି କବିଚିତ୍ତ କରୁଣାରେ ବିଗଳିତ ହୋଇ ପଡ଼ିଛି । ନିଖିଳ ଜଗତର ବ୍ୟଥା, ବେଦନା, ଶୁଭ, ଅଶୁଭ ସବୁ କିଛିକୁ ଆପଣାର କରି ନେଇଛି ।

ଜାତିପ୍ରୀତି ବା ଦେଶପ୍ରାଣତା କବି ଗୋପବନ୍ଧୁଙ୍କର ଅଧିକାଂଶ କବିତାକୁ ଏକ ନୂତନ ମୂଲ୍ୟବୋଧ ଆଣି ଦେଇଛି । କୁସଂସ୍କାର ଓ ଅନ୍ଧବିଶ୍ୱାସରେ ଆଚ୍ଛନ୍ନ ଏକ ସମାଜ, ବୈଦେଶିକ ଶକ୍ତିର ଇଚ୍ଛା ଓ ଆଇନ୍‌ର ଦାସ ଏକ ଦେଶ, ପାଶ୍ଚାତ୍ୟ ସଭ୍ୟତାରେ ସଭ୍ୟମ୍ମନ୍ୟ ଏକ ମାନବଗୋଷ୍ଠୀ ସେ କାଳର ଅନ୍ୟ ଅନେକ ଚିନ୍ତାନାୟକ ଓ ସାହିତ୍ୟିକ-ମାନଙ୍କର ଚିନ୍ତା-ରାଜ୍ୟରେ ଯେପରି ଏକ କ୍ରାନ୍ତିକାରୀ ଆଲୋଡ଼ନ ସୃଷ୍ଟି କରିଥିଲା, ଗୋପବନ୍ଧୁଙ୍କଠାରେ ସେ ପ୍ରକାର ପ୍ରତିକ୍ରିୟାର ବଳିଷ୍ଠ ତଥା ଐକାନ୍ତିକ ପ୍ରକାଶ ସ୍ୱତଃ ଦୃଷ୍ଟି ଆକର୍ଷଣ କରେ । ଅତୀତର ପରଂପରା, ଓ ଐତିହ୍ୟକୁ ମଣିମାଣିକ୍ୟଜ୍ଞାନରେ ତୋଳି ଧରି, ବର୍ତ୍ତମାନର ଅଧୋଗତିରେ ଅଶ୍ରୁ ମୋଚନ କରିବାର ରୀତି ଗୋପବନ୍ଧୁଙ୍କ କବିତାରେ ବିଶେଷ ପରିଲକ୍ଷିତ । ଭବିଷ୍ୟତ୍ ଲାଗି ଏଥିରେ ମଧ୍ୟ କମ୍ ଆଶା ଓ ଆଶ୍ୱାସନାର ବାଣୀ ଫୁଟି ନାହିଁ । ଏ ସବୁ କବିତାରେ ବିଦଗ୍ଧ ପାଣ୍ଡିତ୍ୟ ସେତିକି ପରିମାଣରେ ଫୁଟି ନାହିଁ, ଅଧିକ ଫୁଟିଛି ସହଜ ମନର ସାରଲ୍ୟ ଶୋଭିତ କବିତ୍ୱ, ହାର୍ଦ୍ଦିକତା । ଏ ହାର୍ଦ୍ଦିକତା, ଏ ହୃଦୟବତ୍ତା କବିଙ୍କର ଏକାନ୍ତ ନିଜସ୍ୱ, ଅନୁପମ । ବାରବାଟୀ ଭଳି ଗୌରବମୟ ଅତୀତର ମହାର୍ଘ

ସ୍ମୃତିଜଡ଼ିତ ସ୍ଥାନ ଅଥବା ଶୋଭାମୟୀ ଚଳକାର ସନ୍ଦର୍ଶନ ବର୍ତ୍ତମାନର ପରିପ୍ରେକ୍ଷୀରେ ତୁଳନୀୟ ହେଲବେଳେ ଅନୁଶୋଚନାରେ କବିପ୍ରାଣ ଜର୍ଜରିତ ହେବାରେ ବୈଚିତ୍ର୍ୟ ନ ଥାଇ ପାରେ, ମାତ୍ର କୋକିଳର କୁହୁତାନ କେଉଁଠି ଶୁଣି, କାଙ୍କଣ ଗଛଟିଏ କେଉଁଠି ମରିଯାଇଥିବାର ଦେଖି, ଗ୍ରୀଷ୍ମକାଳରେ ଖୁଣ୍ଟା ଗଛଟିଏ କେଉଁଠି ଠିଆ ହୋଇଥିବାର ଲକ୍ଷ୍ୟ କରି କବିଙ୍କ ଭାବ-ରାଜ୍ୟରେ ଦେଶ, ଜାତି, ପରାଧୀନ ମାନବ-ଗୋଷ୍ଠୀ ଯେପରି ରୂପ ପରିଗ୍ରହ କରି ଉଭା ହୋଇଛନ୍ତି । ପତନର ଅନ୍ଧକାର ମଧ୍ୟରେ ଅଭ୍ୟୁଦୟର ଯେଉଁ ଆଲୋକବର୍ତ୍ତିକା ଧରି ଉଭା ହୋଇଛନ୍ତି, ତାହା କବି-ମାନସର ଆବେଗ-ପ୍ରବଣତାର ବିଚିତ୍ର ରୂପାୟନ । 'ଗୋଟିଏ କାଙ୍କଣ ଗଛ' କବିତାରେ ଉପର୍ଯ୍ୟୁକ୍ତ ଭାବର ପରିଚୟ କିପରି ମିଳୁଛି ଦେଖାଯାଉ—

> "ଅନ୍ୟର ଆଶ୍ରୟ ପାଇ ଉଚେ ଶିର ଟେକି,
> ବଡ଼ପଣ ଅଭିଳାଷେ ନର ଅବିବେକୀ ।
> ସ୍ୱାଧୀନତା-ପ୍ରିୟେ ! ଧରି ଅପର ଚରଣ,
> ଭାଗ୍ୟ ଅରଜନୁଁ ଶ୍ରେୟ ମଣିଲୁ ମରଣ ।"

ଖୁଣ୍ଟା ଗଛଟିଏ ଦେଖି କବିଙ୍କ ମନରେ ସୃଷ୍ଟି ହୋଇଥିବା ପ୍ରତିକ୍ରିୟାର ଅନ୍ୟ ଏକ ଉଦାହରଣ—

> "ସ୍ୱାର୍ଥ ସାଧନେ ରତ ସର୍ବେ ନରତେ ।
>
> କେତେ କାଳ ଏପରି ହେବ ଭାରତେ ।"

ଏପରି ଅନ୍ୟ ଅନେକ କ୍ଷେତ୍ରରେ ସରଳ ଓ ସହଜ ଭାବରେ ପ୍ରକାଶ କରିବାକୁ ଯାଇ କବି ତାଙ୍କ ଅନ୍ତରର ଭାବୋଚ୍ଛ୍ୱାସର ପରିଚୟ ଦେଇଛନ୍ତି । ନିଜେ ଅନୁପ୍ରେରିତ ହେବା ସଙ୍ଗେ ସଙ୍ଗେ ଏକ ପ୍ରଚ୍ଛନ୍ନ ଉଦ୍‌ବୋଧନ ଅନ୍ୟମାନଙ୍କପାଇଁ ସାଇତି ରଖିଛନ୍ତି ନିଜର ସୃଷ୍ଟିରେ ।

କୈଶୋର ଓ ଯୌବନରେ ମାନସ-ରାଜ୍ୟରେ କେତେ ଆଶା କେତେ କଳ୍ପନା ଫୁଟି ଉଠେ । କବିଙ୍କର 'ଅବକାଶ-ଚିନ୍ତା'ର କବିତା ସକଳ ପ୍ରାୟ ଏହି ଅବସ୍ଥାର ସୃଷ୍ଟି । ଇନ୍ଦ୍ରିୟ ଗ୍ରାହ୍ୟ ରୂପ, ରସ, ଗନ୍ଧ ଓ ସ୍ପର୍ଶର ପ୍ରତିକ୍ରିୟା କବିତାଗୁଡ଼ିକରେ ପ୍ରତିଫଳିତ ହେବା ଏକାନ୍ତ

ସ୍ୱାଭାବିକ । ରେଭେନ୍‌ସା କଲେଜରୁ ବିଦାୟ ନେଲାପରେ ଅସରାଏ ବର୍ଷା ହୋଇ ଗଲାପରେ, କାଠଯୋଡ଼ି-ତୀରରେ ସାୟଂକାଳୀନ ଶୋଭା ସନ୍ଦର୍ଶନରେ ଏବଂ ଅନ୍ୟ ଅନେକ ପରିବେଶରେ କବି-ମାନସ ଯେଉଁ ରସ ଆସ୍ୱାଦନ କରିବାକୁ ଆଗ୍ରହ ପ୍ରକାଶ କରିଛି ତାହା ଉଚ୍ଚ କୋଟୀର ନ ହେଲେ ମଧ୍ୟ ଅନୁଭୂତିର ସ୍ୱଚ୍ଛତା ଭାବତଦ୍‌ଗଦ ଏକ ସରଳ ପ୍ରାଣର ପ୍ରତିଛବି ପ୍ରକାଶ କରିଛି । କବିତାର ଭାବ-ସମ୍ପାଦନକ୍ଷେତ୍ରରେ କବିଙ୍କର ଅନନ୍ୟସାଧାରଣ, ସ୍ୱଭାବସିଦ୍ଧ ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ରହିଛି— ଏହାହିଁ 'ଅବକାଶ-ଚିନ୍ତା'ର ଆଲୋଚନାରୁ ଜଣାଯାଏ । ମହାକାଳର ଅନନ୍ତ-ପ୍ରବାହ, ଅବାରିତ ଗତି ସ୍ରୋତ ଏବଂ ସେ ସ୍ରୋତରେ ଭାସମାନ, ନିମଜ୍ଜମାନ ବସ୍ତୁ, ବ୍ୟକ୍ତି, କୀର୍ତ୍ତି-ଆଦିକୁ ସେ ନିବିଡ଼ଭାବରେ ଅନୁଧ୍ୟାନ କରିବାକୁ ଚେଷ୍ଟା କରିଛନ୍ତି । ଧ୍ୟାନସ୍ତିମିତ ଚକ୍ଷୁରେ ସେ ଲକ୍ଷ୍ୟ କରିଛନ୍ତି ଏହି ସର୍ବଙ୍କ ମହାକାଳର ଅପ୍ରତିହତ ଶକ୍ତି । ଏହି ଅନୁଧ୍ୟାନରେ ଫୁଟିଉଠିଛି କୈଶୋରର ଜିଜ୍ଞାସା ଏବଂ ଯୌବନର ମମତା । ଏହି ପ୍ରବୃତ୍ତିର ଚରମ ବିକାଶ ହୋଇଛି ଯେତିକିବେଳେ, ଯେତେବେଳେ ବାହ୍ୟ ରୂପ, ପ୍ରକୃତିର ଶୋଭାମୟ ଅଙ୍ଗ, ଉପାଙ୍ଗର ନିର୍ଦ୍ଦିଷ୍ଟ ସତ୍ତା (concrete)କୁ ପରିତ୍ୟାଗ କରି ପ୍ରବୃତ୍ତିର ପରିଗୃହୀତ କାମ, କ୍ରୋଧ, ମାରବତାପ୍ରଭୃତି ମାନସିକ ଭାବନିଚୟର ଅପ୍ରତ୍ୟକ୍ଷ ସତ୍ତା (Abstract) ସଂପର୍କରେ କବିଙ୍କର ଚିନ୍ତାଧାରା ପ୍ରକାଶ ପାଇଛି ।

ଆଦର୍ଶ ତଥା ପ୍ରେରଣାମୟ ବ୍ୟକ୍ତିଗତ ଜୀବନର ପ୍ରଭାବ ସାହିତ୍ୟିକ ଅଭିବ୍ୟକ୍ତିର ପରିସରମଧ୍ୟକୁ ପ୍ରବେଶ କରିବା ରୀତିଟି ବୀରପୂଜା ନାମରେ ପାଶ୍ଚାତ୍ୟ ରୀତିର ଅନୁକରଣମାଧ୍ୟମରେ ଓଡ଼ିଆ ସାହିତ୍ୟର ବହୁ କବି, ଗାଳ୍ପିକ ଏବଂ ପ୍ରାବନ୍ଧିକମାନଙ୍କୁ ପ୍ରଭାବିତ କରିଛି । କବି ମଧୁସୂଦନ, ଫକୀରମୋହନ, ନନ୍ଦକିଶୋରପ୍ରଭୃତିଙ୍କର କବିତାରେ 'ବୀରପୂଜା' ସମ୍ବଳିତ ଭାବଧାରା ସେଥିପାଇଁ ଦେଖାଯାଇଛି । ଗୋପବନ୍ଧୁ ସେହି ପରମ୍ପରାର ଅନୁସରଣ କରିଥିଲେହେଁ ଏ କ୍ଷେତ୍ରରେ ମୌଳିକତା ପ୍ରଦର୍ଶନ କରି ପାରିଛନ୍ତି । 'ଶମ୍ଭୁକର ବାଜପେୟୀ, ଜଗନ୍ନାଥ, ବଳରାମ, ସାରଳାଦାସ, ଉପେନ୍ଦ୍ର ଭଞ୍ଜଙ୍କଠାରୁ ପଣ୍ଡିତ ହରିହର ଦାଶ ଶର୍ମା ଓ ମୋ-ନାନୀପର୍ଯ୍ୟନ୍ତ ସବୁ ଐତିହାସିକ, ପାରମ୍ପରିକ ଏବଂ ସାମାଜିକ ବ୍ୟକ୍ତିବିଶେଷଙ୍କ ଜୀବନୀରୁ ଗୋପବନ୍ଧୁ ଯେଉଁ ପ୍ରେରଣା ଲାଭ କରିଛନ୍ତି,

ଯେଉଁ ଉଦ୍‌ବୋଧନର ବାଣୀ ଶ୍ରବଣ କରିଛନ୍ତି, ତାହା ପ୍ରକାଶ କରିବାରେ ତାଙ୍କର ଅକୃତ୍ରିମ ନିଷ୍ଠା ହିଁ ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ଏ ଅକୃତ୍ରିମତା ଚୂଡ଼ାନ୍ତ ସ୍ପର୍ଶ କରିଛି – ଯେତେବେଳେ ଲୋକ-ପ୍ରଚଳିତ ପ୍ରବାଦ ଓ ବିଶ୍ୱାସ ସହିତ କବିଚିତ୍ତର ସମନ୍ୱୟ ଘଟିଛି—ଦାଣ୍ଡୀ-ରାମାୟଣରଚୟିତା ବଳରାମ ଦାସଙ୍କ ସମ୍ପର୍କରେ କବିଙ୍କର ଧାରଣା ଲକ୍ଷ୍ୟ କରାଯାଇ ପାରେ—

"ତୁଏ ମୋ ପ୍ରତ୍ୟକ୍ଷ ନୀଳାଚଳ-ପତି
ଭକତ-ବନ୍ଧୁ ଠାକୁର,
ଉତ୍କଳ-କଲ୍ୟାଣେ ଯୁଦ୍ଧ-ଅଭିଯାନେ
ଜିଣିଲେ ଯେ କାଞ୍ଚିପୁର ।
କବିରୂପେ ପୁଣି ଅବତରି ବେନି
ଜଗନ୍ନାଥ, ବଳରାମ,
ଧର୍ମ-କର୍ମ-ଦୀକ୍ଷା ସାହିତ୍ୟ ସୁଶିକ୍ଷା
ପ୍ରଚାରି ରଖିଲ ନାମ ।"

ଉପେନ୍ଦ୍ର ଭଞ୍ଜଙ୍କୁ ସେହିପରି କବି ଗୋପବନ୍ଧୁ ଯେପରି ଲକ୍ଷ୍ୟ କରିଛନ୍ତି, ତାହା ଓଡ଼ିଶାର ପୁରପଲ୍ଲୀରେ ଆଦୃତ ହେବାର କାରଣ ହେଉଛି ତାଙ୍କ ଦର୍ଶନରେ ସାର୍ବଜନୀନ, ଅନାବିଳ ସତ୍ୟର ପରିପ୍ରକାଶ ଯେପରି ଘଟିଛି ତାହା ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରିଛି । ତାହା ହେଉଛି—

"ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।

ସାରଳାଦାସ କବିତାରେ ସେପରି ପ୍ରକାଶ ପାଇଛି ଯେଉଁ ପ୍ରତିଚ୍ଛବି, ତାହା ହେଉଛି—

ଉଠ ଶୂଦ୍ର ମୁନି ! କେତେକାଳ ତୁମି
ହୋଇ ରହିଥିବ ଆଉ,
ଭାରତ ତଇଳେ ନବ ଜ୍ଞାନ-ଦୀପ
ଜଳୁ ଥରେ ଦାଉ ଦାଉ ।

'ଅବକାଶ-ଚିନ୍ତା'ରେ ସନ୍ନିବେଶିତ କବିତାଗୁଡ଼ିକ କବିଙ୍କ କାବ୍ୟିକ-ଜୀବନର ପ୍ରାରମ୍ଭକାଳୀନ ରଚନା । କବିଙ୍କ ପରବର୍ତ୍ତୀ ସୃଷ୍ଟିରେ ପ୍ରତିଫଳିତ ଭୂୟୋଦର୍ଶନ, ଅନୁଭୂତିର ପ୍ରଗାଢ଼ତା ଓ ପ୍ରକାଶଭଙ୍ଗୀର ସାବଲୀଳତା ଓ ବଳିଷ୍ଠତା ଏଥିରୁ ଆଶା କରିବା ସମୀଚୀନ ହୋଇ ନ ପାରେ । ପ୍ରଥମ ପ୍ରଣୟର ସ୍ପନ୍ଦନ ଓ ବେପଥୁ ପ୍ରଣୟୀ, ପ୍ରଣୟିନୀଙ୍କ ପ୍ରାଣକୁ ଯେପରି ଏକ ଅସ୍ଥିର ଆବେଗରେ, ଏକ ଅନନୁଭୂତ ଉଲ୍ଲାସରେ ଉଲ୍ଲସିତ କରେ—'ଅବକାଶ-ଚିନ୍ତା'ର କବି ଓ କବିତାକୁ ଲକ୍ଷ୍ୟ କଲେ ଏହିପରି ଜଣାପଡ଼େ । କାରଣ ଗୋପବନ୍ଧୁ ସ୍ୱଭାବତଃ କବି । ଦ୍ରବଣୀୟ ରସଗ୍ରାହୀ ଚିତ୍ତ, ସାଧନାର ଦିବ୍ୟ ପ୍ରବୃତ୍ତି ଏବଂ ଅନନ୍ତ ସମ୍‌ବେଦନଶୀଳ ପ୍ରାଣର ଅଧିକାରୀ ଗୋପବନ୍ଧୁ, 'ଅବକାଶ-ଚିନ୍ତା'ରେ ତାଙ୍କର ସାଧନାର ମାର୍ଗ ଏବଂ ସିଦ୍ଧି-ପରିକଳ୍ପନାର ପରିଚୟ ଦେଇଛନ୍ତି । ଭାବୀ ସାହିତ୍ୟିକ ଜୀବନର, ବଳିଷ୍ଠ ସୂଚନା ଏହାର ବିଭିନ୍ନ କବିତାରେ ଭରି ରହିଛି । ସେଥିପାଇଁ 'ଅବକାଶ-ଚିନ୍ତା' ଗୋପବନ୍ଧୁଙ୍କ ସାହିତ୍ୟିକ-ଜୀବନ-ପ୍ରଭାତର ଏକ ବର୍ଣ୍ଣାଢ଼୍ୟ ଉଦୟ-ଉତ୍ସବ ।

# ଗୋପବନ୍ଧୁଙ୍କ କବିତାରେ ଜୀବନଦର୍ଶନ

ଅଧ୍ୟାପକ ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର ଏମ୍. ଏ. ଡି. ଲିଟ୍

ସଭ୍ୟତା ଓ ଜ୍ଞାନର ବିକାଶ ସଙ୍ଗେ ମାନବର ମାନସରାଜ୍ୟ ଚିନ୍ତାରାଶିର ମଧ୍ୟ ବଳିଷ୍ଠ ଅଭିବ୍ୟକ୍ତି ଘଟିଥିଲା । ସଂସ୍କୃତି ଓ ସାହିତ୍ୟର ଏହିପରି ପ୍ରସାର ଘଟିଲା । ପ୍ରତି ଯୁଗରେ କାବ୍ୟ କବିତାର ଆଦର, ପ୍ରଶସ୍ତି ଏବଂ ଲୋକପ୍ରିୟତା ପ୍ରମାଣିତ ହୋଇପାରିଛି । କାବ୍ୟକବିତା କବିର ମାନସପ୍ରଦେଶର ଉଜ୍ଜ୍ୱଳ ପ୍ରତିଫଳନ ଏବଂ ସେହି ପ୍ରତିଫଳନ କିମ୍ବା ସାଧାରଣତଃ ସାମାଜିକ ପ୍ରୟୋଜନକୁ ଅପେକ୍ଷା ରଖିଥାଏ । ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ସମାଜରେ କବିତା ଏବଂ କଳାର ପ୍ରତିଷ୍ଠା ପ୍ରତିଯୁଗରେ ସ୍ୱୀକୃତ ହୋଇଛି ।

ମହାକବି ସେକ୍ସପିଅରଙ୍କ ଭାଷାରେ କବିତାର ଅନନ୍ୟ-ସାଧାରଣ ଆକର୍ଷଣୀ ଶକ୍ତି ନିକଟରେ ପ୍ରତ୍ୟେକ ପ୍ରାଣ ଭାବବିହ୍ୱଳିତ ଏବଂ ଚିନ୍ତାଉଚ୍ଛ୍ୱସିତ ହୋଇଥାଏ ।

**"The man that hath on music in himself nor is not moved with concord of sweet sounds is fit for treasons, stratagems and spoils."**

କବିମାନେ ସାଧାରଣତଃ ଉଚ୍ଚଚିନ୍ତାର ଅଧିକାରୀ ଏବଂ ସେମାନଙ୍କର ମାନସପ୍ରଦେଶ ସର୍ବଦା ଉନ୍ମୁକ୍ତ ଆକାଶ ସଦୃଶ ମୁକ୍ତ ଏବଂ ବିପ୍ଳବାତ୍ମକ ଅଭିବ୍ୟକ୍ତିରେ ସଂପ୍ରସାରିତ ହୋଇଥାଏ । କବିମାନେ ସାଧାରଣତଃ ନିର୍ଦ୍ଦିଷ୍ଟ ଆଦର୍ଶ ଅପେକ୍ଷା ପ୍ରଥମେ ଉଚ୍ଚ ମୌଳିକ କବିତ୍ୱର ଆହ୍ୱାନରେ ବିହ୍ୱଳ ଏବଂ କବିତ୍ୱର ଶକ୍ତି ହିଁ ସେମାନଙ୍କ କବିତାର ସଂଜ୍ଞା

ନିରୂପଣ କରିଥାଏ । ପ୍ରତ୍ୟେକ କବି ତା'ର ପାରିପାର୍ଶ୍ୱିକ ସାମାଜିକ ବେଷ୍ଟନୀ ଏବଂ ରାଜନୈତିକ ପ୍ରଭାବର ଅଧୀନ । ତାର ସମଗ୍ର କାବ୍ୟିକ ସୃଷ୍ଟି ସମସାମୟିକ ରାଜନୈତିକ ଏବଂ ଐତିହାସିକ ଚେତନାଦ୍ୱାରା ପରିପୁଷ୍ଟ ଏବଂ ବ୍ୟକ୍ତିଗତ ଐକାନ୍ତିକ ନିଷ୍ଠା ଏବଂ ବିଶ୍ୱାସଦ୍ୱାରା ସଂଗଠିତ । ସେ ତା'ର ଶ୍ରେଷ୍ଠ କାବ୍ୟ-କବିତାର ପରିସରରେ ବ୍ୟକ୍ତିଗତ ଜୀବନର ସ୍ତରରୁ ଊର୍ଦ୍ଧ୍ୱରେ ଥାଏ ଏବଂ ତା'ର କବିଜୀବନର ଆଦର୍ଶ ପ୍ରମାଣିତ ହୁଏ ତା'ର କାବ୍ୟକବିତାର ଚିରନ୍ତନତତ୍ତ୍ୱରେ ।

ମାନବସମାଜ ପ୍ରତ୍ୟେକ ଯୁଗରେ ବିରାଟ ପରିବର୍ତ୍ତନ ଏବଂ ବିପ୍ଳବର ସମ୍ମୁଖୀନ ହୋଇଥାଏ । ରାଷ୍ଟ୍ରନେତାମାନେ କେହି କେହି ତାକୁ ସାମାଜିକ ପରିବର୍ତ୍ତନ କିମ୍ବା ରାଜନୈତିକ ପୁନରୁତ୍‌ଥାନ ଆଖ୍ୟା ଦେଇଥାନ୍ତି । ପ୍ରତିଯୁଗର ସନ୍ଧିକ୍ଷଣରେ ସମାଜର ସମସ୍ତ ପୁରାତନ ରୀତିନୀତି, ଆଦର୍ଶ, ଚିନ୍ତା ଏବଂ ପରମ୍ପରାର ଓଲଟପାଲଟ ହୋଇ ଯାଇଥାଏ । ସମାଜ କଦାପି ସ୍ଥିର ଏବଂ ଏକ ଅବସ୍ଥାରେ ଅଚଳ ନୁହେଁ, ବରଂ ସମାଜ ବ୍ୟକ୍ତିର ଚିନ୍ତାଶକ୍ତିର ତରଙ୍ଗରେ ତରଙ୍ଗିତ ଏବଂ କ୍ରିୟାଶୀଳ । ଏକ ବୃହତ୍ତର ବ୍ୟାପକ ମାନସିକ ଆଦର୍ଶ ପଛରେ ଏହି ମାନବସମାଜ ବରାବର ଧାବିତ, ଉଦ୍‌ବେଳିତ, ଉଦ୍‌ଭ୍ରାନ୍ତ ଏବଂ ଚଞ୍ଚଳ କବିର ମାନସରାଜ୍ୟରେ ଚିନ୍ତା-ତରଙ୍ଗ ବରାବର ଉତ୍‌ଥିତ ହେଉଥାଏ । ଏହି ଚିତ୍ତବିକ୍ଷୋଭ ଏବଂ ଚୈତ୍ତିକ ଆନ୍ଦୋଳନର ପ୍ରଧାନ ଭିତ୍ତି ହେଲା କବିର କବିତ୍ୱ, ଦାର୍ଶନିକର ଦାର୍ଶନିକତା ଏବଂ ସନ୍ଥ ସନ୍ନ୍ୟାସୀ ସମାଜସଂସ୍କାରକ ଯୁଗ-ପ୍ରବର୍ତ୍ତକମାନଙ୍କର ଧ୍ୟାନ, ଧାରଣା ଏବଂ ତପସ୍ୟା । ଧର୍ମ, ଭକ୍ତି, ପ୍ରୀତି ଏବଂ ଆତ୍ମବିଶ୍ୱାସର ଅଭିବ୍ୟକ୍ତିରେ ବ୍ୟକ୍ତିପ୍ରାଣର ଅନନ୍ତ ଶକ୍ତି ପ୍ରକଟିତ ହୁଏ । ଗୋପବନ୍ଧୁ ତାଙ୍କର ସମସାମୟିକ ସାମାଜିକ ପରିବେଷ୍ଟନୀରେ ଏବଂ ରାଜନୈତିକ ପରିବେଶରେ ପ୍ରଥମ ଜଣେ ଉଚ୍ଚକୋଟୀର କବି ଥିଲେ ।

କବିତ୍ୱ ଏକ ସହଜାତ ପ୍ରବୃତ୍ତି । ମାନବଜାତି ଏବଂ ମାନବସମାଜ ସମ୍ମୁଖରେ କବିତ୍ୱ ମହାନ୍ ଆଦର୍ଶ ଉପସ୍ଥାପନ କରିଥାଏ । ଦେଶର ଓ ଜାତିର ସମସାମୟିକ ଅବସ୍ଥା ବିଗ୍ଭରରେ ଗୋପବନ୍ଧୁଙ୍କ କାବ୍ୟ-କବିତାର ମୂଲ୍ୟାଙ୍କନ କରିବାକୁ ହେବ । ଗୋପବନ୍ଧୁଙ୍କ କବିଜୀବନରୁ ଆଦର୍ଶ ଏବଂ ସାଧନାର ମୂଲ୍ୟ କିପରି ସୁଦୂରପ୍ରସାରୀ, ତାହାର ନିରୂପଣ ଏବଂ

ଗଷ୍ଠାର ଉପଲବ୍ଧି ଉପରେ ନିର୍ଭର କରେ । ଜୀବନରେ ମହାନ୍ ସତ୍ୟର ଅନୁସନ୍ଧାନ, ସମାଜରେ ଦେଖା ଦେଇଥିବା ଅପୂର୍ଣ୍ଣତାର ବିଲୋପସାଧନ, ଭାଗବତପ୍ରୀତି, ଜାତିପ୍ରୀତି ଏବଂ ମାନବପ୍ରେମ ହିଁ ଗୋପବନ୍ଧୁଙ୍କ ଲିଖିତ ଶତାଧିକ କବିତାର ଅମଳିନ ସ୍ୱାକ୍ଷର । ସମାଜସେବକ, ସଂସ୍କାରକ, ଜାତୀୟ ବିଦ୍ୟାଳୟ ଶିକ୍ଷକ ଗୋପବନ୍ଧୁ ଦାଶଙ୍କର ବିଭିନ୍ନ ସମୟର କାର୍ଯ୍ୟାବଳୀ ତାଙ୍କର ମୌଳିକ କବିତ୍ୱଶକ୍ତିର ବିକାଶ ସହିତ ଜଡ଼ିତ । ଗୋପବନ୍ଧୁ ଥିଲେ ଉତ୍କଳର ପୁରପଲ୍ଲୀରେ ଜନସେବାର ପ୍ରତୀକ, ରାଷ୍ଟ୍ରୀୟ ଜୀବନରେ ଥିଲେ ସାମ୍ୟ ଏବଂ ସ୍ୱାଧୀନତାର ବାର୍ତ୍ତାବହ, ଶିକ୍ଷାକ୍ଷେତ୍ରରେ ଥିଲେ ଅଗ୍ରଣୀ, ସଂସ୍କାରକ ଏବଂ ଏହିସବୁ ବିଭିନ୍ନତାହିଁ ସାମଗ୍ରିକଭାବରେ ତାଙ୍କ କବିତାମଧ୍ୟରେ ପ୍ରତିଫଳିତ ହୋଇଥିଲା । ସେଥିପାଇଁ ଗୋପବନ୍ଧୁଙ୍କ କାବ୍ୟକବିତା, ଯଥା 'ବନ୍ଦୀର ଆତ୍ମକଥା', 'କାରା-କବିତା', 'ଧର୍ମପଦ', 'ଅବକାଶ ଚିନ୍ତା' ହେଉଛି ତାଙ୍କର ବିଭିନ୍ନ କର୍ମମୟ ଜୀବନର ବୈପ୍ଳବିକ ଚିନ୍ତା-ସମଷ୍ଟିର ଏକକ ଅଭିବ୍ୟକ୍ତି । ଗୋପବନ୍ଧୁଙ୍କ ମାନବିକତା ମୂଲ୍ୟ-ପ୍ରଯୁକ୍ତ ସମସ୍ତ କବିତା ତାଙ୍କର ବହୁମୁଖୀ ପ୍ରତିଭାର ଗୋଟିଏ ଗୋଟିଏ ଦିଗ । ପରାଧୀନ ଉତ୍କଳୀୟ ସମାଜରେ ମୁଖ୍ୟତଃ ସେ ଥିଲେ ସଂଗ୍ରାମପ୍ରିୟ ଜଣେ ବିପ୍ଳବୀ କବି ଏବଂ ସମାଜସ୍ତରରେ ଥିଲେ ବିପ୍ଳବୀ ସଂସ୍କାରକ । ଗୋପବନ୍ଧୁଙ୍କ କବିତାର ମର୍ମ, ଆବେଦନ, ବ୍ୟାପ୍ତି ଏବଂ ପ୍ରଶସ୍ତି ବିଚାର ଏହି ପ୍ରବନ୍ଧର ଆଲୋଚ୍ୟ ବିଷୟ । ଗୋପବନ୍ଧୁଙ୍କ କବିତ୍ୱ ଏକ କ୍ରମବର୍ଦ୍ଧିଷ୍ଣୁ ଶକ୍ତି, ଏକ କ୍ରମବର୍ଦ୍ଧିଷ୍ଣୁ ଧାରା । ତାଙ୍କର ଜୀବନ କର୍ମଯୋଗର ଅଭିବ୍ୟକ୍ତିଦ୍ୱାରା ନିୟନ୍ତ୍ରିତ । ମାନବସମାଜରେ ଦେଶ ବା ଜାତିର ପର୍ଯ୍ୟାୟରେ ପ୍ରତିଭାଶାଳୀ କବି ଗୋପବନ୍ଧୁ ଯେପରି ଏକୀଭୂତ ହୋଇ ଯାଇଛନ୍ତି । ତାହା କୌଣସି ଆଦର୍ଶର ସାମୟିକ ପ୍ରେରଣାରେ ନୁହେଁ । ବରଂ ତାହା ସୁଦୃଢ଼ କର୍ମବିଶ୍ୱାସ, ବଳିଷ୍ଠ ବିଶ୍ୱପ୍ରୀତିଦ୍ୱାରା ହିଁ ଉଦ୍‌ବୁଦ୍ଧ । ପ୍ରାଚୀନ ବିଚାରଧାରାରେ ଗୋପବନ୍ଧୁ ଅଗ୍ରଗତି କରିଥିଲେ ଏକ ସର୍ବ ନୂତନ ବିଶ୍ୱମାନବର କ୍ରାନ୍ତିକାରୀ ଅନୁଶୀଳନରେ । ଏହି ଅନୁଶୀଳନ ହିଁ ତାଙ୍କ କବିଜୀବନର କବିତ୍ୱ, ତାଙ୍କ ତ୍ୟାଗୀ ରାଜନୈତିକ ଜୀବନର ସାର୍ଥକତା ଏବଂ ଦୈନନ୍ଦିନ ଉପାସନା, ସୂତାକଟା, ମୋଟା ଖଦଡ଼ଲୁଗା ପରିଧାନରତ ନିର୍ମଳ ଆଚରଣରେ ହିଁ ପ୍ରତିଫଳିତ । ସମ୍ପୂର୍ଣ୍ଣ ଉପଯୋଗିତା, ଦାବୀ ଏବଂ ପ୍ରୟୋଜନ ଦୃଷ୍ଟିରେ ବିଚାର କଲେ

ଗୋପବନ୍ଧୁ ଥିଲେ କ୍ରାନ୍ତିକାରୀ ପୌରୁଷର ପ୍ରତିମୂର୍ତ୍ତି । ତାଙ୍କର ସମଗ୍ର ଚିନ୍ତା, କର୍ମଧାରା ନୂତନ ନୁହେଁ । ଭାରତୀୟ ପ୍ରାଚୀନ ଐତିହ୍ୟ ଏବଂ ପରମ୍ପରା ସହିତ ତା'ର ଗଭୀର ଅବିଚ୍ଛେଦ୍ୟ ସମ୍ପର୍କ ଥିଲା; କିନ୍ତୁ ସେହି ଆଦର୍ଶ ଏବଂ କର୍ମଧାରାର ନୂତନତ୍ୱ ହେଲା ଭାରତୀୟ ଭିତ୍ତିଭୂମିରେ ତା'ର ଚମକପ୍ରଦ ପରିସ୍ଫୁରଣ । ସହାନୁଭୂତିଶୀଳ ପ୍ରେମ, ଆଶା, ଆନନ୍ଦ, ତ୍ୟାଗ ଏବଂ ଦୁଃସାହସିକତା ଗୋପବନ୍ଧୁଙ୍କ କର୍ମୀଜୀବନର ଏକ ଏକ ସଙ୍କେତ ଏବଂ ସେହି ସଙ୍କେତ ଅଧିକ ପ୍ରସ୍ଫୁଟିତ ହୋଇଛି ତାଙ୍କର ସମଗ୍ର କାବ୍ୟକବିତାରେ । କର୍ମୀ ଗୋପବନ୍ଧୁ ଏବଂ କବି ଗୋପବନ୍ଧୁ ଏମାନଙ୍କ ମଧ୍ୟରେ ଜୀବନରେ ଏକ ନିଷ୍ଠାପୂତାମୂଳକ ଗଭୀର ବୈପ୍ଳବାତ୍ମିକ ମନୋବୃତ୍ତି ହିଁ ବିଦ୍ୟମାନ । କବି ଗୋପବନ୍ଧୁଙ୍କ କର୍ମବାଦ ତଥା ଆନନ୍ଦବାଦ ତାଙ୍କର ଶ୍ରେଷ୍ଠଠାରୁ ବଢ଼ିଯାଏ ପ୍ରତ୍ୟେକ କବିତାର ଅମଳିନ ଶୁଭ ଉପଗୀତ ଏହି ଭାବକୁ ଏବଂ ଚିନ୍ତାକୁ ଆହୁରି ଉଦ୍ଦୀପ୍ତ କରିଥିଲା ।

କବିଙ୍କର କବିତ୍ୱର ପ୍ରଥମ ସ୍ଫୁରଣ ହୋଇଥିଲା ତାଙ୍କୁ ଯେତେବେଳେ ମାତ୍ର କୋଡ଼ିଏ ବର୍ଷ ବୟସ । ତାଙ୍କର "ଅବକାଶ ଚିନ୍ତା" କବିତା ପୁସ୍ତକ ୧୮୯୯ ମସିହାରେ ଓଡ଼ିଶା ପେଟ୍ରିଅଟ ପ୍ରେସରୁ ପ୍ରକାଶିତ ହୋଇଥିଲା । ୧୯୨୩ ସାଲ ଜାନୁଆରୀ ୨୬ ତାରିଖରେ କଟକରୁ 'ହଜାରିବାଗ ଜେଲ' ଉଦ୍ଦେଶ୍ୟରେ ରାଜନୈତିକ-ବନ୍ଦୀଭାବରେ ଓଡ଼ିଶାରୁ ତାଙ୍କର ପ୍ରସ୍ଥାନ । ହଜାରିବାଗ ଜେଲରେ ପହଞ୍ଚି 'ବନ୍ଦୀର ଆତ୍ମକଥା" ରଚନାରେ ମନୋନିବେଶ କରିଥିଲେ । ସେହିପରି "କାରା କବିତା" ମଧ୍ୟ ବନ୍ଦୀ ଓଡ଼ିଆ ସନ୍ତାନର ଶ୍ରେଷ୍ଠ ଅଭିବ୍ୟକ୍ତିରୂପେ ତାଙ୍କ କବିତ୍ୱର ଅଧିକାରୀ । ଗୋପବନ୍ଧୁଙ୍କ ସମସ୍ତ ମୌଳିକ ସାହିତ୍ୟିକ ସୃଷ୍ଟି, ତାଙ୍କର ଅନନ୍ୟସାଧାରଣ ମାନବସେବା, ସ୍ୱାଧୀନତାପାଇଁ ଆତ୍ମୋତ୍ସର୍ଗ ଏବଂ ଦୁର୍ଗତ ଦରିଦ୍ରନାରାୟଣଙ୍କ କରୁଣ ତଥା ଶୈଳ୍ପିକ ଅଭିବ୍ୟକ୍ତି, ମାନବିକ ଦୃଷ୍ଟିଭଙ୍ଗୀ, ସହାନୁଭୂତିଶୀଳ ଦୃଷ୍ଟିକୋଣ ଏବଂ ଗଣ-ଉପାସନା ତାଙ୍କର କବିତାର ପ୍ରତିଧ୍ୱନିତ ମୂର୍ଚ୍ଛନା । ଦେଶ ହିଁ ତାଙ୍କ କବିତାର ସ୍ୱପ୍ନ, ଜାତି ହିଁ ତାଙ୍କ କବିତାର ଉଦ୍‌ବୋଧନ, ଈଶ୍ୱର ବିଶ୍ୱାସ, ଭଗବତ୍‌ପ୍ରେମ ତାଙ୍କ କବିତାର ନିର୍ଯ୍ୟାସ; ଧର୍ମର ଜୟ ସତ୍ୟର ଜୟ—ଏହି ଅଫୁରନ୍ତ ବୈଦିକ ବାଣୀ ତାଙ୍କ କବିତାର ଶକ୍ତି

ଏବଂ ସାମର୍ଥ୍ୟ । ଏହି ବିରାଟ ବିଶ୍ୱର ସ୍ରଷ୍ଟା, ଏହି ଅନନ୍ତ ସୃଷ୍ଟିର କଳାକାରଙ୍କ ନିକଟରେ କବି ଭକ୍ତିପ୍ଳୁତ ହୃଦୟରେ ଅଶ୍ରୁ-ନିବେଦନ ଜଣାଇଛନ୍ତି । ଭକ୍ତର ଆବେଦନ-ପରିପ୍ଳୁତ ଅଭିବ୍ୟକ୍ତି ଗୋପବନ୍ଧୁଙ୍କ କବିତାର ପ୍ରଥମ ଏବଂ ପ୍ରଧାନ ସୌନ୍ଦର୍ଯ୍ୟ । ବିଶ୍ୱାନୁରାଗ, ଈଶ୍ୱରଭକ୍ତି, ମାନବଜାତିର ପରମ୍ପରାରେ ଗଭୀର ବିଶ୍ୱାସ—ଏହା ହିଁ ତାଙ୍କ କବିତାର ପ୍ରତ୍ୟେକ ଛନ୍ଦକୁ ମଣ୍ଡିତ କରିଥିଲା । ଉତ୍କଳବାସୀ ତଥା ସମଗ୍ର ଭାରତୀୟ ଜନତାକୁ ଜାତୀୟ ପ୍ରୀତି, ପରମ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ଏବଂ ଅନୁପ୍ରାଣିତ କରିବାରେ ତାଙ୍କର ପ୍ରତ୍ୟେକ କବିତା ଉଦ୍ଦେଶ୍ୟପୂର୍ଣ୍ଣ ଏବଂ ଉପାଦାନପ୍ରଧାନ ହୋଇପାରିଛି । ତାଙ୍କର କବିତା ସୌଜନ୍ୟଯୁକ୍ତ; କିନ୍ତୁ ସେ ସୌନ୍ଦର୍ଯ୍ୟ ବହିଃପ୍ରକୃତିର ହେଲେହେଁ ମୂଳତଃ ତାହା ଅନ୍ତଃପ୍ରକୃତିର । ସ୍ଥୂଳ ଅପେକ୍ଷା ସୂକ୍ଷ୍ମର ବିଚାର ହିଁ ଗୋପବନ୍ଧୁଙ୍କ "ଲିରିକ" ବା ଗୀତି କବିତାର ଉପଜୀବ୍ୟ ବିଷୟ । ଗୋପବନ୍ଧୁ କେବଳ ସତ୍ୟର ସନ୍ଧାନୀ ନ ଥିଲେ, ତାଙ୍କର ପ୍ରତ୍ୟେକ କବିତା ସତ୍ୟର ସ୍ରଷ୍ଟାରୂପେ ଉଦ୍‌ଭାସିତ । "ଅବକାଶଚିନ୍ତା"ର ପ୍ରାର୍ଥନା କବିତାଟି ହିନ୍ଦୁସଂସ୍କୃତି ଏବଂ ଭାରତୀୟ ପରମ୍ପରାର ପ୍ରତୀକ । ବେଦ-ଉପନିଷଦ୍ ଯୁଗର ଋଷି କଣ୍ଠବାଣୀ-ଝଙ୍କୃତ ହେବା ଭଳି ପ୍ରାର୍ଥନା କବିତାରେ ସେହି ସମଗ୍ର ବିଶ୍ୱସ୍ରଷ୍ଟାର ଅମୃତମୟ କଣ୍ଠ-ଝଂକୃତ ହୋଇଛି ।

ଗୋପବନ୍ଧୁଙ୍କର ସମଗ୍ର କବିତାକୁ ନିମ୍ନପ୍ରକାରେ ଶ୍ରେଣୀବିଭକ୍ତ କରାଯାଇପାରେ—(୧) ପ୍ରକୃତିବର୍ଣ୍ଣନାମୂଳକ, (୨) ସ୍ୱଦେଶବନ୍ଦନାମୂଳକ, (୩) ସମାଜସ୍ଥ ନରନାରୀଙ୍କର ପରସ୍ପର ସମ୍ପର୍କସୂଚକ, (୪) ଚିନ୍ତାମୂଳକ ଏବଂ (୫) ଜଣାଣ କିମ୍ବା ଭଜନମୂଳକ । ତେଣୁ ଏହି ସୂଚିନ୍ତିତ ପର୍ଯ୍ୟାୟରେ ଦେଖିବାକୁ ଗଲେ ଗୋପବନ୍ଧୁଙ୍କ କବିତାରେ ପ୍ରାକୃତିକ ସୌନ୍ଦର୍ଯ୍ୟ, ଅତୀତ ଉତ୍କଳର ପ୍ରୀତି ଓ ପରମ୍ପରା, ବିଶ୍ୱସ୍ରଷ୍ଟା ନିକଟରେ ମାନବର ଭକ୍ତିଅର୍ଘ୍ୟ, ସହାନୁଭୂତି, ଶ୍ରଦ୍ଧା, ସାମାଜିକ ପ୍ରତିକ୍ରିୟା ଏବଂ ବିଶ୍ୱମାନବର ଦରଦ ହିଁ ପ୍ରତିଫଳିତ । ପ୍ରଥମ ପର୍ଯ୍ୟାୟଭୁକ୍ତ ହେଲା କାରାକବିତା ଏବଂ ଅବକାଶଚିନ୍ତା-ଅନ୍ତର୍ଗତ କବିତାଗୁଡ଼ିକ : ଯଥା ବନ୍ଦୀର ସ୍ୱଦେଶଚିନ୍ତା । ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ ହେଲା "ବନ୍ଦୀର ଆତ୍ମକଥା", ତୃତୀୟ ପର୍ଯ୍ୟାୟଭୁକ୍ତ ହେଲା 'ପିତୃପକ୍ଷତର୍ପଣ' ଏବଂ 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' ପ୍ରଭୃତି କବିତା । ଚିନ୍ତାମୂଳକ କବିତା ହେଲା, 'ବନ୍ଦୀର ବିରହ ବ୍ୟଥା' ଏବଂ

ଜଣାଣ ଓ ଭକ୍ତିମୂଳକ କବିତା ହେଲା ଅବକାଶଚିନ୍ତା-ଅନ୍ତର୍ଗତ ବ୍ୟକ୍ତିଗତ ଅନୁଭୂତି ଏବଂ ଆବେଦନସର୍ବସ୍ୱ କବିତାବଳୀ । ଏହି ସମସ୍ତ କବିତା ମଧ୍ୟରେ ଇତିହାସ, ସମାଜତନ୍ତ୍ର, ରାଜନୀତି ବିଜ୍ଞାନ, ବିଶ୍ୱ-ସେବା, ମୈତ୍ରୀଚିନ୍ତା ଏବଂ ବୃହତ୍ତ ଜୀବନାଦର୍ଶପ୍ରଭୃତି ଭାବପ୍ରତିବିମ୍ବିତ । 'ଅବକାଶଚିନ୍ତା' ପୁସ୍ତକ ଚନ୍ଦ୍ରଶେଖର ସାମନ୍ତଙ୍କୁ ଉତ୍ସୃଷ୍ଟ କରାଯାଇଥିଲା । 'ପ୍ରାର୍ଥନା' କବିତା ଦେଖ, କାଠଯୋଡ଼ିତୀରେ ଚନ୍ଦ୍ରାଲୋକ, ନିଶୀଥ କାଠଯୋଡ଼ିତୀରେ ସାୟଂକାଳ, ପଣ୍ଡିତ ହରିହର ଦାଶ ଶର୍ମା, କୋକିଳ, ଗ୍ରୀଷ୍ମେ ଘୂର୍ଣ୍ଣିଗଛ, ମୋ ନାମପ୍ରଭୃତି କବିତା କବିଙ୍କର ବ୍ୟକ୍ତିଗତ ଅନୁଭୂତିସମ୍ପନ୍ନ ଏବଂ ସାମାଜିକ ଚେତନାସମ୍ବଳିତ । ଏହି କବିତ୍ୱସୁଲଭ ଚେତନା ବ୍ୟତୀତ ଗୋପବନ୍ଧୁଙ୍କ କବିତାରେ ଆଉରି ଏକ ଉପାଦାନ ଜୀବନ୍ତଭାବରେ ସଂଯୋଜିତ ଏବଂ ତାହା ହେଉଛି ତାଙ୍କର ଇତିହାସ ଏବଂ ପରମ୍ପରାପ୍ରାଣତା । ବରଂ ଗୋପବନ୍ଧୁଙ୍କ କବିତାର ମୂଳ ଉତ୍ସ ହେଲା ଐତିହାସିକ ସ୍ମୃତି ଓ ପରିବେଶ । ବ୍ୟକ୍ତି, ଜାତି, ଇତିହାସ ଏବଂ ଆମର ପ୍ରାଚୀନ ସମାଜ—ଏହାର ପରସ୍ପରର ସଂଘର୍ଷମୂଳକ ଚିତ୍ର ହେଲା ଗୋପବନ୍ଧୁଙ୍କ କବିତାର ଉପଜୀବ୍ୟ ବିଷୟ । ଦିବ୍ୟ ଦୃଷ୍ଟି, ଦିବ୍ୟ ଚେତନା, ପୂତ ପ୍ରେରଣା ଏବଂ ମାନବ-ଧର୍ମଶାସନଲବ୍ଧପ୍ରସାଦରାଶି ଗୋପ-ବନ୍ଧୁଙ୍କର ସମଗ୍ର ସୃଷ୍ଟି ଚିହ୍ନିତ ଏବଂ ରସାଣିତ ।

"ବନ୍ଦୀର ଆତ୍ମକଥା"ରେ ରାଜନୈତିକ ବିଜ୍ଞାନ ଏବଂ ସମାଜ-ବିଜ୍ଞାନର ଅପୂର୍ବ ମିଶ୍ରଣ ଘଟିଛି । ଦେଶ, ଜାତି, ରାଷ୍ଟ୍ର ଏବଂ ଲୋକ-ଶାସନର ଯେଉଁ ବିଶ୍ଳେଷଣ କରା ଯାଇଅଛି, ତାହା ଯେ କୌଣସି ଉଗ୍ରପନ୍ଥୀ ସାମ୍ୟବାଦୀ ରାଷ୍ଟ୍ରନାୟକଙ୍କର ପରିକଳ୍ପନା ସଙ୍ଗେ ପ୍ରାୟ ମିଶି-ଯାଉଛି । ଉତ୍କଳର ଜାତୀୟଜୀବନର ବିପ୍ଳବୀ ଗୋପବନ୍ଧୁ ଯଥାର୍ଥତଃ ଇଟାଲୀର ବିପ୍ଳବୀ ପୁରୁଷ ମାଟିଜିନ୍‌ଙ୍କ ସଙ୍ଗେ ତୁଳନୀୟ ଏବଂ ବିଶ୍ୱ-ଦରଦୀ ଏବଂ ସହାନୁଭୂତିସମ୍ପନ୍ନ କବି ଗୋପବନ୍ଧୁଙ୍କ କବିତା ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଅମର କବିତାର ପ୍ରାଣୋଚ୍ଛ୍ୱାସ ସହିତ ତୁଳନୀୟ । ଆତ୍ମବଳୀ, ଆତ୍ମୋତ୍ସର୍ଗର ଅମଳିନ, ଅପୂରନ୍ତ ସ୍ୱାକ୍ଷର ଗୋପବନ୍ଧୁଙ୍କ "ବନ୍ଦୀଙ୍କ ଆତ୍ମକଥା"ରେ ସ୍ୱର୍ଣ୍ଣାକ୍ଷରରେ ଚିହ୍ନିତ । ଉତ୍କଳର ମୌଳିକ ଧର୍ମ, ସ୍ୱଦେଶର ମୌଳିକ ପ୍ରେରଣା, ଇତିହାସର ଅବିସ୍ମୃତ ଦାନ, ଯୁବଶର ପ୍ରତିଭା ଏବଂ କୋଣାର୍କପରି ଐଶ୍ୱର୍ଯ୍ୟମୟ ଶିଳ୍ପକୃତିର ସୁଗାନ୍ତ-



କାବ୍ୟ ଆହ୍ୱାନ, ମହାପରୀକ୍ଷା, ସାମ୍ୟ ସ୍ୱାଧୀନତାହିଁ ତାଙ୍କର କବିତାମାନଙ୍କରେ ପ୍ରତିଷ୍ଠିତ, ପ୍ରମାଣିତ ସତ୍ୟ । ସେଥିପାଇଁ—

"ପୂର୍ବପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବାପାଇଁ କଲେ ତନୁ କ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାପରୀକ୍ଷା କି ବୁଝିବ ଉତ୍କଳ ?"

ରାଜନୀତିକ ଗୋପବନ୍ଧୁଙ୍କର ହୃଦୟର ଅସୀମ ଆକାଂକ୍ଷା କବିତ୍ୱର ଅପୂର୍ବ ଉଚ୍ଛ୍ୱାସରେ ରସାଣିତ ଏବଂ ପ୍ରଭାବିତ । ପୁରାଣ ଏବଂ ଇତିହାସର 'ମନ୍ତ୍ର' ସାଧନ ଗୋପବନ୍ଧୁଙ୍କର ହୋଇଥିଲା ପରମ ଧ୍ୟେୟ । 'ବନ୍ଦୀର ଆତ୍ମକଥା'ରେ ସୁସ୍ଥ ସୁଦୃଢ଼ ଲୋକଶାସନ, "ପଞ୍ଚପରମେଶ୍ୱରର ପରମ୍ପରା", ପଲ୍ଲୀର ସୁସ୍ଥ ଅର୍ଥନୀତି ଏବଂ ଆଧ୍ୟାତ୍ମିକ ଚିନ୍ତାର ଅପୂର୍ବ ନିବେଦନ ଶୁଣା ଯାଇଥାଏ । "The Universal Education League' ର ପରିକଳ୍ପନାଠାରୁ ଆରମ୍ଭ କରି "ବିଂଶ ଶତାବ୍ଦୀର ପ୍ରଥମ ଦିନରେ ବାରବାଟୀ ଦର୍ଶନେ" କବିତା ପର୍ଯ୍ୟନ୍ତ ଗୋପବନ୍ଧୁଙ୍କ ଅନ୍ତରରେ ଜାଗ୍ରତ ହୋଇଛି ମାନବିକ ବୈପ୍ଳବିକ ଆଦର୍ଶର ଏକ ପୁଣ୍ୟ ପ୍ରେରଣା । କବି ଗୋପବନ୍ଧୁ ଅନ୍ୟାନ୍ୟମାନଙ୍କ ପରି ତାଙ୍କର ଚିନ୍ତାଧାରାରେ ସନ୍ଦେହ ପ୍ରକାଶ କରି ନ ଥିଲେ । ସେ ପ୍ରାଚୀନ ପରମ୍ପରାକୁ କେବଳ ବିଶ୍ୱାସ କରି ନ ଥିଲେ ଏବଂ ବର୍ତ୍ତମାନକୁ ସେ ଅସ୍ୱୀକାର କରିଥିଲେ, ତାହା ନୁହେଁ । ବରଂ ତାଙ୍କ କବିତାର ଉଭୟ ପ୍ରାଚୀନ ଏବଂ ନବୀନର ସ୍ୱୀକୃତି ଦେଖିବାକୁ ମିଳେ । ସେଥିପାଇଁ କବି ଗୋପବନ୍ଧୁଙ୍କୁ ଓଡ଼ିଶାର ଗାନ୍ଧି ଆଖ୍ୟା ଦିଆ ଯାଇଥିଲା । ତାହାର ଏକମାତ୍ର ହେତୁ ହେଉଛି କବି ଗୋପବନ୍ଧୁ ଥିଲେ କର୍ମକ୍ଷେତ୍ରରେ ଯଥାର୍ଥ ବାସ୍ତବବାଦୀ । ଦେଶପାଇଁ ସେ କାରାବରଣ କରିଥିଲେ, ଜାତିପାଇଁ ସେ 'ଧର୍ମପଦ'ର ଆତ୍ମାର ଆବିଷ୍କାର କରିଥିଲେ ଏବଂ ଧର୍ମ-ଅର୍ଥ-ମୋକ୍ଷପାଇଁ ସେ ସମଗ୍ର ଓଡ଼ିଶାର ହୃଦୟ ଆବିଷ୍କାର କରି ଯାଇଛନ୍ତି ।

ଗୋପବନ୍ଧୁଙ୍କ କବିତା ପୁଣ୍ୟଭୂମି ଉତ୍କଳର କୋଣାର୍କ ଧର୍ମପଦ-ପ୍ରଭୃତି କୀର୍ତ୍ତିର ପୁନଃ ଆବିଷ୍କାର । 'ମୋ ନାଗୀ' ତୁଲ୍ୟ କ୍ଷୁଦ୍ର କ୍ଷୁଦ୍ର କବିତାରେ ହିନ୍ଦୁର ପରିକଳ୍ପିତ ସମାଜ ଓ ପରିବାରର ପୁନଃପ୍ରତିଷ୍ଠା ଏବଂ ସତ୍ୟବାଦୀ ଜାତୀୟ ବିଦ୍ୟାଳୟମାଧ୍ୟମରେ କବିତାର ଯଥାର୍ଥ ଗୌରବ-ପ୍ରତିଷ୍ଠା ଯୁଗେ ଯୁଗେ ତାଙ୍କ କବିତ୍ୱର ସ୍ମାରକୀ ହୋଇ ରହିଥିବ । ନୀଳାଚଳଧାମ, ମହୋଦଧି, କୋଣାର୍କ, ବାରବାଟୀର କବିତ୍ୱପୂର୍ଣ୍ଣ ପରିକ୍ରମାଠାରୁ ହଜାରିବାଗ ଜେଲରେ ବିଶ୍ୱ ଜୀବନର ପରିକଳ୍ପନା କେବଳ ତାଙ୍କର ପକ୍ଷେ ସମ୍ଭବ ଉଚ୍ଚ କବିତ୍ୱର ପରିଚ୍ଛାୟକ ।

"ନିଜ ସ୍ୱାର୍ଥଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରତିରକ୍ତବିନ୍ଦୁ ।"

ଏହି ସାର୍ବଜନୀନ ଆବେଦନ ସମଗ୍ର ଓଡ଼ିଆ ସାହିତ୍ୟ କାହିଁକି ଭାରତୀୟ ସାହିତ୍ୟରେ ମଧ୍ୟ ବିରଳ ।

ସଂଗଠିତ ଜାତୀୟ ଜୀବନ ଯେଉଁ ଗୁରୁଦାୟିତ୍ୱ, ତାହା ରାଜନୀତିଜ୍ଞମାନେ ଉପଲବ୍ଧି କରିପାରନ୍ତି, ମାତ୍ର କବିମାନେ ତାହାର ଯଥାର୍ଥ ରୂପରେଖ ଦିଅନ୍ତି ସେମାନଙ୍କ କବିତାରେ । ଆଉ ଗୋପବନ୍ଧୁଙ୍କ କବିତା ଏହି ବିଷୟରେ ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କର କବିତା ଜାତୀୟ ଜୀବନର ନିଖୁଣ ଚିତ୍ର । ସମାଜ ଏବଂ ପରିବାରର ଚରମ ଅଭିବ୍ୟକ୍ତି ଏବଂ ବିଶ୍ୱସମସ୍ୟା ସମାଧାନର ପ୍ରକୃତ ନିର୍ଦ୍ଦେଶକ ।

"ଜାତୀୟ ମମତା ବିଶ୍ୱ-ଜନପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି ।"

ଏହାହିଁ ପୁଣ୍ୟପୁରୁଷ ଗୋପବନ୍ଧୁଙ୍କ କବିତ୍ୱର ପ୍ରକୃତ ପରୀକ୍ଷା । 'ପ୍ରକୃତିପର୍ଯ୍ୟବେକ୍ଷଣ'-ଦକ୍ଷ କବି ଗୋପବନ୍ଧୁ କପରି ପ୍ରକୃତିମଧ୍ୟରେ ବିଶ୍ୱ ମାନବପ୍ରୀତିର ସ୍ୱପ୍ନ ଦେଖିଥିଲେ, ତାହା ଏଠାରେ ବିଚାର୍ଯ୍ୟ—

"ନ ଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ,

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ,
ନାଚିବି ବିଶ୍ୱପ୍ରେମ ପରମାନନ୍ଦେ ।
ଚିର ସାଗର ନଦୀ ତପନ ଶଶୀ
ସର୍ବେ ଚୁମ୍ବିବେ ମୋତେ ପ୍ରେମେ ପରଶି ।
ମୋ ପ୍ରାଣ ପ୍ରେମାଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ-ପସରା ।"

କବିତାର ଏତାଦୃଶ ଆବେଦନ ସଦୃଶ ବିଶ୍ୱକବି ରବୀନ୍ଦ୍ର-ନାଥଙ୍କର —

ଏ ଆମାର ଶରୀରେର ଶିରାୟ ଶିରାୟ
ଯେ ପ୍ରାନ ତରଙ୍ଗମାଲା ରାତି ଦିନ ଧାୟ
ସେଇ ପ୍ରାନ ଛୁଟିୟାଛେ ବିଶ୍ୱ ଦିଗ୍‌ବିଜୟେ
ସେଇ ପ୍ରାନ ଅପରୂପ ଛନ୍ଦେ ତାଲେ ଲୟେ
ନାଚିଛେ ଭୁବନେ ।

ଗୋପବନ୍ଧୁଙ୍କ ସମଗ୍ର କବିତାସମ୍ଭାର ଏହି ଗୌରବରେ ମଣ୍ଡିତ ଏବଂ ଶୈଳ୍ପିକ ସିଦ୍ଧି ର ଅଧିକାରୀ । ଭକ୍ତି, ପ୍ରୀତି, ମୁକ୍ତିରୂପ ଗଙ୍ଗାଯମୁନା ସରସ୍ୱତୀ ରୂପ 'ତ୍ରିବେଣୀ' ଧାରାଦ୍ୱାରା ପ୍ଲାବିତ ।



## ଗୋପବନ୍ଧୁଙ୍କ କବିତାରେ ମାନବିକତା

କବିପ୍ରାଣର ଆଶାଆକାଙ୍କ୍ଷା କବିତାରେ ଆବେଗପୂର୍ଣ୍ଣ ଭାଷାରେ ପ୍ରକାଶିତ ହୋଇଥାଏ । କବି ସାଧାରଣ ବ୍ୟକ୍ତିସ୍ତରରୁ ଉନ୍ନୀତ ହୋଇ ନିଜର କଳ୍ପନା ସାହାଯ୍ୟରେ ଦିବ୍ୟଲୋକ ଦର୍ଶନ କରିଥାଏ । କବିଶକ୍ତି ଓ କବିପ୍ରତିଭା ମୁଖ୍ୟତଃ ସହାନୁଭୂତି ଓ ସମ୍ବେଦନଶୀଳତା ଉପରେ ଆଧାରିତ । ସହାନୁଭୂତି, ଅଶ୍ରୁସ୍ପନ୍ଦନମୟ ପ୍ରତ୍ୟେକ ଉଚ୍ଚକୋଟୀର କବିତାର କମ୍ବା ମୌଳିକ କୃତିର ହେଉଛି ନିଦର୍ଶନ । କବିର ହୃଦୟରେ

ବିଶ୍ୱର ବ୍ୟଥା ଓ ବେଦନା ଯେଉଁ ଆଘାତ ଦିଏ, ତାହାର ମୂର୍ଚ୍ଛନା ତାହାର କୃତିରେ ପ୍ରତିଧ୍ୱନିତ ହୋଇଥାଏ । ପୃଥିବୀର ଅଧିକାଂଶ ସୃଜନାତ୍ମକ ସାହିତ୍ୟ ଏହି ମାନବିକ ସହାନୁଭୂତି ଓ ସମ୍ବେଦନଶୀଳତା ଉପରେ ଆଧାରିତ । କବିତା, ଗଳ୍ପ, କିମ୍ବା ଉପନ୍ୟାସ ସାର୍ବଜନୀନ ହେବାକୁ ହେଲେ ତାହା କେତେକ ନିର୍ଦ୍ଦିଷ୍ଟ ଆଦର୍ଶ ଓ ମୌଳିକ ଲକ୍ଷ୍ୟ ପୂରଣ କରିବା ଉଚିତ । ଉଚ୍ଚ ଶ୍ରେଣୀର କବିତା ବ୍ୟକ୍ତି ଓ ସମାଜର ବ୍ୟଥା ଓ ବେଦନାକୁ ସ୍ପଷ୍ଟ ଓ ବ୍ୟଞ୍ଜନାପୂର୍ଣ୍ଣ ଭାଷାରେ ବିବରି ପ୍ରକାଶ କରିଥାଏ । ବିଶ୍ୱସାହିତ୍ୟର ନାଟ୍ୟକାର ସେକସ୍‌ପିଅର, କବି ମିଲ୍‌ଟନ୍, ଦାନ୍ତେ ପ୍ରଭୃତିଙ୍କ ରଚନାରେ ଏହି ସାର୍ବଜନୀନ ସହାନୁଭୂତିବୋଧ ଓ ସତ୍ୟବୋଧ ବର୍ଣ୍ଣନାରେ ଅଗ୍ରସ୍ଥାନ ଲାଭ କରିଥାଏ । କାବ୍ୟ-କବିତା ସୃଷ୍ଟିରେ ବ୍ୟକ୍ତି ମନର ବିକାଶ ଓ ପ୍ରାଣାନୁଭୂତିର ପ୍ରକାଶପାଇଁ ଅପେକ୍ଷା ରଖେ । ବ୍ୟକ୍ତିର ଅନୁଭୂତି ଯେତେବେଳେ ଶବ୍ଦରେ ରୂପାୟିତ ଓ ଛନ୍ଦରେ ଝଂକୃତ ହୁଏ, ସେତେ-ବେଳେ ତାହା କାବ୍ୟଗୌରବ ଲାଭକରେ । ପ୍ରତ୍ୟେକ ସାହିତ୍ୟରେ ଏପରି କେତେକ ବିଷୟ ଅଛି, ଯାହା ଚିରଦିନ ମଣିଷକୁ ଅଭିଭୂତ କରିଥାଏ । କବିତା ଶକ୍ତି ଓ ପ୍ରେରଣାର ଉତ୍ସ । ବିଶ୍ୱସାହିତ୍ୟର ପ୍ରାଚୀନତମ ନିଦର୍ଶନ ରୂପକଥା ସେହିପରି ସାର୍ବଜନୀନ ସତ୍ୟ ଉପରେ ପ୍ରତିଷ୍ଠିତ । କବିର କଳ୍ପନାଲୋକ ଆମକୁ ଏତେ ଗଭୀର ଓ ନିବିଷ୍ଟ ମନେହୁଏ; କାରଣ ସେଥିରେ ଆନ୍ତରିକତା ଓ ସ୍ପଷ୍ଟବାଦିତା ଥାଏ । ଚେତନ ଓ ଅବଚେତନର ସଂଘର୍ଷହିଁ କବିକୁ ବାସ୍ତବବାଦୀ କରିଥାଏ । ସେକସ୍‌ପିଅରଙ୍କ ନାଟକର ନାୟକ ହାମ୍‌ଲେଟ୍‌ର କରୁଣ ଅବସାନରେ ଆମେ ଯେତିକ ବ୍ୟଥା ଅନୁଭବ କରୁ, ସେତିକ ମଧ୍ୟ ଆଶ୍ୱସ୍ତିର ନିଶ୍ୱାସ ମାରୁ । ରାଧାନାଥଙ୍କ ନନ୍ଦିକେଶ୍ୱରୀରେ ନନ୍ଦିକାଜୀବନର ସମସ୍ତ ବିଫଳତା ଓ କାରୁଣ୍ୟ ପାଠକକୁ ସହାନୁଭୂତିରେ ଅଭିଭୂତ କରିଦିଏ; କିନ୍ତୁ ପାଠକର ସମ୍ବେଦନଶୀଳତା ସେହିଠାରେ ସମାପ୍ତ ହୁଏ ନାହିଁ । ବିଶ୍ୱର ଚରମ ଓ ପରମ ସତ୍ୟପ୍ରତି ସମାଜର ଦୃଷ୍ଟି କାବ୍ୟମାଧ୍ୟମରେ ଆକୃଷ୍ଟ ହୋଇଥାଏ ।

ଦୀର୍ଘ କାବ୍ୟ ହେଉ କିମ୍ବା କ୍ଷୁଦ୍ର କବିତା ହେଉ ସେଥିରେ ନିହିତ ଅଭିଜ୍ଞତା କାହାର ? ନିଶ୍ଚିତଭାବରେ କୁହାଯାଇପାରେ, ସେହି

ଅଭିଜ୍ଞତା ହେଉଛି ବିଶ୍ୱବାସୀର; କିନ୍ତୁ କବିର କବିତାମାଧ୍ୟମରେ ତାହା ଆତ୍ମପ୍ରକାଶ କରିଥାଏ । ପୃଥିବୀର ଇତିହାସରେ ସମାଜ ଓ ସଂସ୍କୃତି ବରାବର ପରସ୍ପର ସହିତ ଜଡ଼ିତ ହୋଇ ରହିଆସିଛନ୍ତି । ପ୍ରତିଯୁଗରେ ଆଙ୍ଗିକ ଓ ଆତ୍ମିକ ପରୀକ୍ଷା ଓ ପରିବର୍ତ୍ତନ ଚାଲିଥିଲେ ମଧ୍ୟ ଚିରନ୍ତନ ସତ୍ୟ ଅପରିବର୍ତ୍ତିତ ରହିଥାଏ । କାବ୍ୟ-କବିତାରେ ବ୍ୟକ୍ତି ଓ ସମାଜର ପରସ୍ପର ସହାନୁଭୂତିମୂଳକ ସମ୍ପର୍କ ପ୍ରକାଶ ପାଇବା ଉଚିତ । ପ୍ରତି-ଯୁଗରେ ପ୍ରତ୍ୟେକ କବିର ଲକ୍ଷ୍ୟ ହୁଏ ନୂତନ ଚିନ୍ତକଳ୍ପ ସୃଷ୍ଟି କରିବା; ପାଠକସମାଜରେ ସେହି ମାଧ୍ୟମରେ ଗ୍ରହଣୀୟ ଆନୟନ କରିବା । ଭାଷା ଓ ଛନ୍ଦ ସମ୍ପର୍କରେ ଏହି କଥା ମଧ୍ୟ କୁହାଯାଇପାରେ ।

ଏହି ବିଚାର-ପୃଷ୍ଠଭୂମିରେ ଗୋପବନ୍ଧୁଙ୍କ କାବ୍ୟ-କବିତା ଆଲୋଚନା କଲେ ଜଣାଯାଏ ଯେ ବିଶ୍ୱବେଦନାର ତୀବ୍ର ପ୍ରତିକ୍ରିୟା ହିଁ ତାଙ୍କ କବିଚିତ୍ତକୁ ନୂତନ ଜୀବନ୍ୟାସ ଦେଇଥିଲା । ତାଙ୍କ କବିତାସୃଷ୍ଟିର ଏକମାତ୍ର ପ୍ରେରଣା ହେଲା ମାନବୀୟ ଆବେଗ ଓ ଦାରିଦ୍ର୍ୟ, ଶୋକଜର୍ଜରିତ ସମାଜ ପ୍ରତି ସହାନୁଭୂତି । ମଧ୍ୟଯୁଗୀୟ (classical) ଏବଂ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀରେ ପରୀକ୍ଷା କଲେ ଗୋପବନ୍ଧୁଙ୍କ କବିତାର ନିର୍ଦ୍ଦିଷ୍ଟ ମୂଲ୍ୟ ସ୍ପଷ୍ଟହୋଇ ଉଠେ । ତାଙ୍କ କବିତାରେ ବ୍ୟଥା ଓ ବେଦନାର ଦ୍ୟୋତନା ସୀମାହୀନ । ତାଙ୍କର ପ୍ରତ୍ୟେକ କବିତା ସାଧାରଣ ଜୀବନ ଏବଂ ସାଧାରଣ ଦୃଶ୍ୟର ଗୋଟିଏ ଗୋଟିଏ ପ୍ରତିମୂର୍ତ୍ତି ମାତ୍ର । ବ୍ୟକ୍ତି ଚେତନାକୁ ଉଜ୍ଜ୍ୱଳ କରିବାପାଇଁ ତାଙ୍କ କବିତାଗୁଡ଼ିକର ମୂଲ୍ୟ ସର୍ବାଧିକ । ବେନ୍ ଜନ୍‌ସନ୍ (Ben Johnson)ଙ୍କ ସଦୃଶ କବି ଗୋପବନ୍ଧୁ ତାଙ୍କ ରଚନାରେ ନିର୍ଦ୍ଦିଷ୍ଟ ଆଦର୍ଶଦ୍ୱାରା ବରାବର ଚାଳିତ ହୋଇଥିଲେ । "Poetry is a gentle philosophy which leads on and guides us by the hand to action."

ଆବେଗ ପ୍ରବଣତା ଓ ଭାବପ୍ରଗଳ୍ଭତା ଗୋପବନ୍ଧୁଙ୍କ କ୍ଷୁଦ୍ର କବିତାଗୁଡ଼ିକୁ କେତେବେଳେ ଦେଶାତ୍ମବୋଧର ସମ୍ମାନ ଦେଇଛି, କେତେବେଳେ ଦର୍ଶନର ସ୍ପର୍ଶ ଦେଇଛି ଓ କେତେବେଳେ ନିଛକ ବ୍ୟକ୍ତିଗତ ଆନନ୍ଦର ବିଭୂତି ଦାନ କରିଅଛି । ବିଷାଦ, କ୍ଷୋଭ ଏବଂ ଅନୁଶୋଚନା ତାଙ୍କ କବିତାର ଯେପରି ଧ୍ୱନି; ଆଶା, ଏବଂ ସ୍ୱପ୍ନ ସେହିପରି ତା'ର ନିର୍ଯ୍ୟାସ । ଫଳତ ତାଙ୍କର ପ୍ରତ୍ୟେକ କବିତାର ଯେପରି

ଗୌରବ ମୂର୍ଚ୍ଛନା ବଶୃଙ୍ଖଳା ତାଙ୍କ କବିତାର ସେହିପରି ସମ୍ପୂର୍ଣ୍ଣ ବିରୋଧୀ ।

ବ୍ୟକ୍ତି ଓ ଦେଶ ଗୋପବନ୍ଧୁଙ୍କ କବିତାରେ ନୂତନ ଦ୍ୟୋତନା ଓ ନୂତନ ଶଙ୍କଳ୍ପ ନେଇ ଉଦ୍ଭାସିତ । ଅନୁଭୂତି ଓ ଚିନ୍ତା ବିଷୟବସ୍ତୁର ଅଧୀନ ନ ହୋଇ ବରଂ ବାସ୍ତବତାର ଅନୁରୋଧରେ ସତ୍ୟ ଓ ସୌନ୍ଦର୍ଯ୍ୟର କଷଟିପଥରରେ ମୂର୍ତ୍ତିମାନ ହୋଇଅଛି । ପ୍ରାଚୀନ ଓଡ଼ିଶାର ଅନ୍ତରାତ୍ମା ଉତ୍ତମରୂପେ ଉପଲବ୍ଧି କରିବାପାଇଁ କବି ଗୋପବନ୍ଧୁଙ୍କର ଯେଉଁ ଐତିହାସିକ ଦୃଷ୍ଟିକୋଣ, ତାହା କେତେକାଂଶରେ ଏଥିପାଇଁ ଦାୟୀ । ଉପନିଷଦରେ ଉଲ୍ଲେଖ କରାଯାଇଛି ଯେ ସ୍ୱାର୍ଥନ୍ୟସ୍ତ ଅଳ୍ପବୁଦ୍ଧିର ଲୋକମାନେ ସର୍ବଦା ବାହାରର ଚାକଚକ୍ୟରେ ଆକୃଷ୍ଟ ହୋଇଥାନ୍ତି । କିନ୍ତୁ ଗୋପବନ୍ଧୁ ତାଙ୍କ କାବ୍ୟ-କବିତାରେ ଏ ବାହାରର ଚାକଚକ୍ୟକୁ ଆଦୌ ସ୍ଥାନ ଦେଇ ନ ଥିଲେ । ଅତୀତ ସମାଜର ଯେଉଁ ଆଦର୍ଶ, ପୂର୍ବାଚାର୍ଯ୍ୟମାନଙ୍କର ଯେଉଁ ପବିତ୍ର ସହାନୁଭୂତି-ଶୀଳତା, ଉଦାର ମନୋଭାବ ତାହା ଗୋପବନ୍ଧୁ ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ସେଥିପାଇଁ ତାଙ୍କର କବିତାରେ ଉତ୍ତମ ପୁରୁଷର ଓ ବଳିଷ୍ଠ ବ୍ୟକ୍ତିତ୍ୱର ସନ୍ଧାନ ମିଳିଥାଏ ।

"ଶୁଚିବନ୍ତ ହୋଇ ନିଜ ଜ୍ଞାନଘାପ ଜାଳି
ଶୁଦ୍ଧ ଭକ୍ତିରସ ଦିଅ ସେ ଶ୍ରୀପଦେ ଢାଳି
ଉଜାଗର ରହି କର ତା'ଙ୍କ ପ୍ରିୟ କର୍ମ
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି ଧର୍ମ ।
ସମସ୍ତ ଜୀବନ କର ଏକ ଶିବରାତ୍ରି
ଅନ୍ଧାରେ ନ ଛୁଡ଼ ପଥ ହେ ଧ୍ୱରଗଯାତ୍ରି !"

କବିର ମଗ୍ନ ଚୈତନ୍ୟରେ ଏକ ନିର୍ଦ୍ଦିଷ୍ଟ ଆଦର୍ଶବାଦ ବରାବର ସ୍ଥିତିଲାଭ କରିଥିଲା ।

ଗୋପବନ୍ଧୁଙ୍କ କାବ୍ୟ-କବିତାରେ ମାନବିକତାର ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହାର ଦୁଇଟି ଦିଗ ସ୍ୱୀକାର କରାଯାଏ । ଗୋଟିଏ ହେଉଛି ନିର୍ମଳ ଭଗବତ ବିଶ୍ୱାସ, ଅନ୍ୟଟି ହେଉଛି ମାନବପ୍ରେମ । ଏହି ବ୍ୟକ୍ତି ବା ମାନବପ୍ରେମ ପୁଣି ଦେଶର ଜରୁରୀ ସ୍ଥାୟୀ ଓ ଅସ୍ଥାୟୀ ସମସ୍ୟା ଦୃଷ୍ଟିରେ ରାଜନୀତିକ ପରିବେଶରେ, ସାମାଜିକ ବେଷ୍ଟନୀରେ ଭିନ୍ନ ଭାବରେ

ରୂପାୟିତ ହୋଇଥିଲା । ପୌରୁଷ, ପ୍ରତିଭା ଓ କୃତତ୍ୱ ଗୋପବନ୍ଧୁଙ୍କ କବିତାଗୁଡ଼ିକୁ, "ଧର୍ମର ଜୟ ଓ ପାପର କ୍ଷୟ," "ଜୀବେ ଦୟା" ଓ "ଦରିଦ୍ରନାରାୟଣଙ୍କ ସେବା" ମାଟିରେ ରସାଣିତ କରିଥିଲା । ପ୍ରାଚୀନ ଯୁଗର ବ୍ୟାସ, ବାଲ୍ମୀକି, ହୋମର ପ୍ରଭୃତି କବିମାନେ ଯେଉଁ ସତ୍ୟ ଓ ମାନବିକତା ପାଇଁ ଲେଖନୀଧାରଣ କରିଥିଲେ, ଗୋପବନ୍ଧୁ ସେହି ପରମ୍ପରାରୁ ତାଙ୍କ କବିତାମାନଙ୍କରେ ଆଦୌ ବ୍ୟତିକ୍ରମ ଦେଖାଇ ନାହାନ୍ତି ।

ଗୋପବନ୍ଧୁଙ୍କ 'କାରାକବିତା', 'ବନ୍ଦୀର ଆତ୍ମକଥା', 'ଅବକାଶ ଚିନ୍ତା' ପ୍ରଭୃତି ପୁସ୍ତକଅନ୍ତର୍ଗତ କବିତାମାନଙ୍କରେ ଗୋପବନ୍ଧୁ ମାନବିକତାର ଯେଉଁ ଚିତ୍ର ପରିବେଷଣ କରିଛନ୍ତି, ତାହା ସମସାମୟିକ ଓଡ଼ିଆ କାବ୍ୟ କବିତାକୁ ପ୍ରଭାବିତ କରିଥିଲା । କବି, ଗୃହସ୍ଥ, ସନ୍ନ୍ୟାସୀ, ସମାଜସେବକ ଏବଂ ଦରଦୀ ସାଧାରଣ ବ୍ୟକ୍ତି ବନ୍ଧୁ ରୂପରେ ତାଙ୍କ କବିତାଗୁଡ଼ିକରେ ପ୍ରତିଭାତ । ସହାନୁଭୂତି ଓ ସମ୍ବେଦନଶୀଳତା ସାଧାରଣ ପ୍ରତିବେଶୀ ସ୍ତରରୁ ଦେବତା ସ୍ତରକୁ ଉନ୍ନୀତ ହୋଇଅଛି ।

"ଉତ୍କଳବାସୀର ଦେଖି ଏ ଦୁର୍ଗତି
ହାରୁଛନ୍ତି କି ହେ ନୀଳାଚଳ ପତି !
ମାତ୍ର ବୁଝି ଭାଇ ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।"

ବିଂଶଶତାବ୍ଦୀର ନବପର୍ଯ୍ୟାୟରେ ଜାତୀୟତାର ଯେଉଁ ଅଫୁରନ୍ତ ଉଚ୍ଛ୍ୱାସ ସମାଜର ପ୍ରତିସ୍ତରରେ ଦୁଃଖ ଓ ଦୁର୍ଦ୍ଦଶା ବିଚଳିତ ବ୍ୟକ୍ତିର ସହାୟତା ପାଇଁ ଯେଉଁ ବୌଦ୍ଧିକ ସମବେଦନଶୀଳତା ତାହା ଗୋପବନ୍ଧୁଙ୍କ କବିତାରେ ପ୍ରାଞ୍ଜଳ ଭାବରେ ପ୍ରକାଶ ପାଇଥିଲା । ଗାଁର ସାଧାରଣ କୃଷୀଟିଏ ପାଇଁ ଗୋପବନ୍ଧୁ ଯେଉଁ କେତେ ପଦ ସାନ୍ତ୍ୱନା ଦେଇ ଲେଖିଛନ୍ତି, ତାହା ଯଥାର୍ଥରେ ଏକ ନିର୍ଭୀକ ସହାନୁଭୂତିଶୀଳ ବନ୍ଧୁର ପ୍ରତିଚ୍ଛବି ସଦୃଶ ।

"କେତେ କେତେ କୃଷୀ ଭଲ ଭଲ ଲୋକ
ନ ପା'ନ୍ତି ହଓଳା ପେଟପୂରା ତୋକ:
ଥିଲେ ଯେହୁ ମଲ୍ଲ ଉତ୍କଳ ସୈନିକ
ପାଇକ-ପ୍ରଧାନ ମାଗୁଛନ୍ତି ଭିକ ।

ଦେହେ ନାହିଁ ମାଂସ ହୋଇଲୁଛି କଣ୍ଟା
ଅନାହାରେ ଆହା ନ ଉଠଇ ଅଣ୍ଟା ।
ଅର୍ଜନ୍ତି ଯା ଭୁଞ୍ଜେ ମାର ମୁଣ୍ଡିଆଳ
ଦୁଷ୍ଟ ମହାଜନ ଗ୍ରାମ କଣ୍ଟିଆଳ,
ପ୍ରଜାରକ୍ତ-ଶୋଷୀ କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ପାହାର ।”

ରାଜନୀତିକ କ୍ଷମତା, ରାଜନୀତିକ ଶୋଷଣ ନରବରର ପାପ ସଙ୍ଗେ ତୁଳନୀୟ । କବିର ମନରେ ଏହି ବିରୋଧାବସ୍ଥା ଦର୍ଶନରେ ଏପରି ମାନବିକ ସହାନୁଭୂତି ସଞ୍ଚରିତ ହୋଇଥିଲା, ଯାହା କବି ନିଜେ ଆଖିର ଲୁହରେ ଲିପିବଦ୍ଧ କରି ଯାଇଛନ୍ତି ।

“ଚୋର ଅପହାର ଯେବେ ରାଜନୀତି ନାମେ,
ସତ୍ୟ ରାଜନୀତି କାହିଁ ଏ ଭାରତଧାମେ ?
କାହିଁ ଏଥି ରାଜା ? ଏ ଯେ ନଉକର ସାହି,
ପ୍ରଜା-ସୁଖ-ଶାନ୍ତି ନାମେ ବୃଥା ଧର୍ମଦ୍ୱାହି ।
ପ୍ରଜାହିତ, ପ୍ରଜାମତ ଛଳନା କେବଳ
ପ୍ରେଷ୍ୟଗୋଷ୍ଠୀ ଇଚ୍ଛାଧୀନ ଏ ଶାସନ-ବଳ ।”

କବିଙ୍କର ‘ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ’ କବିତାଟି ଯେବେ ଆଲୋଚନା କରାଯାଏ, ତାହେଲେ ସେଥିରେ ଅପୂର୍ବ ପ୍ରତିବେଶୀ ସହାନୁଭୂତି, ଦୁର୍ଗତପାଇଁ ଆଶ୍ୱାସନା ଲକ୍ଷ୍ୟ କରାଯାଏ । ସହାନୁଭୂତି ଓ ସହନଶୀଳତାର ମାପକାଠିରେ କବି ଜାତି ଜାତିର ସମ୍ପର୍କ, ଦେଶ ଦେଶର ସମ୍ପର୍କ, ବ୍ୟକ୍ତି ବ୍ୟକ୍ତିର ସମ୍ପର୍କ ବିଚାର କରିଛନ୍ତି । ତ୍ୟାଗ ପ୍ରତ୍ୟେକ କ୍ଷେତ୍ରରେ ଏକମାତ୍ର ମୁକ୍ତିର ଉପାୟ ରୂପେ ତାଙ୍କ ନିକଟରେ ପ୍ରତିଭାତ ହୋଇଛି । ପାପ-ପୁଣ୍ୟ, ନ୍ୟାୟ ଅନ୍ୟାୟ, ଭାବ-ଅଭାବ, ତ୍ୟାଗ ଭୋଗ—ଏ ସମସ୍ତ କବିଙ୍କ ମନରେ ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ସଞ୍ଚାର କରିଥିଲା । ସେଥିପାଇଁ ତାଙ୍କ କବିତାରୁ ହିଂସା ବିରୁଦ୍ଧରେ, ଅସାମାଜିକତା ବିରୁଦ୍ଧରେ, ଶୋଷଣ ବିରୁଦ୍ଧରେ ଓ ଅତ୍ୟାଚାର ବିରୁଦ୍ଧରେ ସାର୍ଥକ ନୀତିବାଣୀ ଶୁଣିବାକୁ ମିଳେ । ଭାରତରେ ଜାତୀୟ କଂଗ୍ରେସର ଆନ୍ଦୋଳନ ଓ ସେଥିରେ ଗୋପବନ୍ଧୁଙ୍କର ସକ୍ରିୟ ଯୋଗଦାନ ଏକ ପ୍ରଧାନ ଘଟଣା । ଗୋପବନ୍ଧୁ ଦେଶକୁ ଭୁଲିପାରି ନ ଥିଲେ କି ଦେଶ ତାଙ୍କର ଦରଦପୂର୍ଣ୍ଣ

କବିତାଗୁଡ଼ିକୁ ଭୁଲିପାରିବ ନାହିଁ । ବ୍ୟକ୍ତି ଓ ଜୀବନ ପ୍ରତି ତାଙ୍କର ଯେଉଁ ଦୃଷ୍ଟିଭଙ୍ଗୀ ତାହା ସଂସ୍କାରକର ଦୃଷ୍ଟିଭଙ୍ଗୀ । ବ୍ୟକ୍ତି ଓ ସମାଜର ସମସ୍ତ ଅପୂର୍ଣ୍ଣତା ଓ ଅଭାବ ପ୍ରତି କବି ଉଦାସୀନ ହୋଇ ନ ଥିଲେ । ବରଂ ଏକ ନିର୍ଦ୍ଦିଷ୍ଟ ମାଧ୍ୟମରେ ସେ ସମାଜରୁ ସର୍ବବିଧ ଅପର୍ଣ୍ଣତା ଦୂର କରିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ ।

ଗୋପବନ୍ଧୁଙ୍କ କବିତାରେ ବ୍ୟକ୍ତିଗତ ଜୀବନର ଅନୁଭୂତି ଓ ଚିନ୍ତାର ସମନ୍ୱୟ ସମ୍ପାଦିତ ହୋଇଥିଲା । ଜାତୀୟ ଜାଗରଣର ଭାବପ୍ରକାଶର ପ୍ରଧାନ ମାଧ୍ୟମ ହୋଇଥିଲା ମାନବିକ ସହାନୁଭୂତି । କ୍ଷୁଧାର୍ତ୍ତ ଓ ସର୍ବହରା ମଣିଷପାଇଁ ଗୋପବନ୍ଧୁଙ୍କ କବିତାଗୁଡ଼ିକ ବିଶେଷର ଉଦ୍ଦିଷ୍ଟ ଥିଲା । ପ୍ରାଚୀନ ଯୁଗର ନୈତିକତା, ଶ୍ଳୀଳତା ଓ ନିର୍ଦ୍ଦିଷ୍ଟ ଆଦର୍ଶ ଏବଂ ମତବାଦ ଗୋପବନ୍ଧୁଙ୍କ କବିଦୃଷ୍ଟିକୁ ଆହ୍ୱାନ ଜଣାଇଥିଲା । ଜୀବନର ପରିବର୍ତ୍ତନ ପ୍ରବାହ ଭିତରୁ କେତେ ଗୋଟି ମୁହୂର୍ତ୍ତକୁ ରୂପାୟିତ କରିବାରେ ଗୋପବନ୍ଧୁ ସଫଳତା ଲାଭ କରିଥିଲେ । ତାଙ୍କ କବିତାର ନିତନ ସ୍ପନ୍ଦନ ହେଉଛି ସାର୍ବଜନୀନ ସହାନୁଭୂତି । ଆଦର୍ଶବୋଧ ଓ ଦର୍ଶନାନୁଚିନ୍ତା ତାଙ୍କ କବିତାରେ ଯେତେ ସ୍ପଷ୍ଟ ନୁହେଁ, ତା' ଅପେକ୍ଷା ଅଧିକ ସ୍ପଷ୍ଟ କବିର ଆବେଗ । ଜୀବନକୁ ପ୍ରତ୍ୟାଖ୍ୟାନ କରିବାରେ ଗୋପବନ୍ଧୁ ଆଦୌ ପକ୍ଷପାତୀ ନ ଥିଲେ; ବରଂ ଜୀବନକୁ ଅନୁସନ୍ଧାନ କରିବାରେ ତାଙ୍କର ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ।

"ନିଜ ସ୍ୱାର୍ଥଲାଗି ଜାତ ନୁହେଁ ବିନ୍ଦୁ
ବିଶ୍ୱହିତେ ବିନ୍ଦୁ ପ୍ରତି ରକ୍ତବିନ୍ଦୁ ।"

ଏଥିରୁ କଣ ଗୋପବନ୍ଧୁଙ୍କ ବିଶ୍ୱଭାବ, ସହାନୁଭୂତି, ସର୍ବହରା ମଣିଷପାଇଁ ସହାନୁଭୂତିର ପରିକଳ୍ପନା ଜଣାପଡ଼ୁନାହିଁ ? ବିଂଶଶତାବ୍ଦୀର ଜାତୀୟତାବୋଧ ଗୋପବନ୍ଧୁଙ୍କ କବିତାର କେବଳ କ୍ଷଣସ୍ଥାୟୀ ଉପାଦାନ ନୁହେଁ, ଏକ ବିଶ୍ୱମନୋଭାବ, ସାର୍ବଜନୀନ ବିଶ୍ୱାସ, ବାସ୍ତବ ସହାନୁଭୂତି ତାଙ୍କ କବିତାର ମର୍ଯ୍ୟାଦା ।

ଏଥିରୁ କି'ଣ ଗୋପବନ୍ଧୁଙ୍କ ସହାନୁଭୂତିଶୀଳ ମାନସର ଯଥେଷ୍ଟ ପରିଚୟ ମିଳେ ନାହିଁ ? କବିତା ପ୍ରତି ସାଧାରଣ ପାଠକର ଆଗ୍ରହ ଓ ସେମାନଙ୍କ ଉପରେ ତା'ର ପ୍ରଭାବ ବିଳକ୍ଷ କବିତାର ମାପକାଠି । ଗୋପବନ୍ଧୁଙ୍କ କବିତାର ବିଷୟବସ୍ତୁ ସମ୍ପର୍କରେ ସବୁଠାରୁ ମୌଳିକ

ପ୍ରଶ୍ନ ହେଉଛି, ସଂଘର୍ଷ ଓ ସହାନୁଭୂତି । ନିଚ୍ଚକ ବାସ୍ତବତାର ଊର୍ଦ୍ଧ୍ୱରେ ତାଙ୍କର କବିମାନସର ଉଜ୍ଜ୍ୱଳ ଦୀପ୍ତି ବିଦ୍ୟମାନ । ସମସାମୟିକ ସମାଜର ପରିମ୍ପରାର ଅନ୍ତରାଳରେ ଗୋପବନ୍ଧୁଙ୍କ କବିତାର ମୂଲ୍ୟାଙ୍କନ କରିବାକୁ ହେବ । ସାଧାରଣ ଶ୍ରମିକ, କୃଷକ ଏବଂ ସର୍ବହରା ଶ୍ରେଣୀର ପୀଡ଼ିତ ବ୍ୟକ୍ତିର ଜୀବନରହସ୍ୟ ଉଦ୍‌ଘାଟନ କରି ଗୋପବନ୍ଧୁ ଯେପରି କାବ୍ୟକବିତା ଲେଖିଯାଇଛନ୍ତି, ତାହା ପରମ୍ପରା ଅପେକ୍ଷା ଅଧିକ ଶକ୍ତିଶାଳୀ ଏବଂ ଅଧିକ ପ୍ରଭାବଶାଳୀ । ଯେଉଁମାନେ ତାଙ୍କ କାବ୍ୟ-କବିତାରେ କୌଣସି ନୂଆ ବିଷୟବସ୍ତୁ ବା ନୂତନ ପ୍ରସଙ୍ଗ ଖୋଜିବସନ୍ତି, ସେମାନେ ଅବଶ୍ୟ ନିରାଶ ହେବେ । କାରଣ ତାଙ୍କ କବିତାର ଶାଶ୍ୱତ ସଫଳତା ହେଉଛି ସେଥିରେ ଅନ୍ତର୍ନିହିତ ସ୍ନେହ, ଦୟା, ମମତା ଓ ସାନ୍ତ୍ୱନା । କବିଙ୍କର "ଧର୍ମପଦ" କାବ୍ୟ ଏକ ପରମ୍ପରାସମ୍ମତ ବିଷୟବସ୍ତୁକୁ ଅନୁକରଣ କରିଛି । ମାତ୍ର ତା'ର ଆବେଦନ, ତା'ର ସାର୍ଥକତା ବିଷୟବସ୍ତୁରେ ଯେତିକି ନାହିଁ, "ଧର୍ମପଦ" ପ୍ରତି ସମସ୍ତଙ୍କର ସହାନୁଭୂତି ସୃଷ୍ଟି କରିବା କବିଙ୍କର ସେତିକି ପ୍ରଧାନ ଲକ୍ଷ୍ୟ । ଦୀର୍ଘ ତିରିଶ ବର୍ଷ ଧରି ଗୋପବନ୍ଧୁ ଓଡ଼ିଆ କବିତାରେ ଏକ ନୂତନ ଉଚ୍ଛ୍ୱାସ ଆଣିଥିଲେ କରିଥିଲେ । ପ୍ରତିଷ୍ଠିତ ସମାଜବ୍ୟବସ୍ଥାକୁ ଭାଙ୍ଗିଦେବା ତାଙ୍କ କବିତାର ଜରୁରୀ ଉଦ୍ଦେଶ୍ୟ ନୁହେଁ; ବରଂ ସହାନୁଭୂତିର ସହିତ ପରିସ୍ଥିତିର ବିଚାର କରିବା ଓ ସମସ୍ୟାର ସମାଧାନ କରିବା ତାଙ୍କର ଲକ୍ଷ୍ୟ ।

"ସର୍ବେ ଆମ୍ଭେ ଏକ ଈଶ୍ୱର-ସନ୍ତାନ,
ସାଧ ବିଶ୍ୱହିତ ତେଜି ଅଭିମାନ ।"

ଗୋପବନ୍ଧୁ ଶକ୍ତି ଓ ସାଧନାପଥରେ ଅନ୍ୟ ପ୍ରତି ସହାନୁଭୂତି ପ୍ରକାଶ କରି ନିଜ ଲକ୍ଷ୍ୟର ନିକଟବର୍ତ୍ତୀ ହୋଇଥିଲେ । ମାନବିକତା ସହିତ ବିଶ୍ୱପ୍ରାଣତା ଓ ବିଶ୍ୱପରାୟଣତା ତାଙ୍କ 'କାରାକବିତା' ଓ 'ବନ୍ଦୀର ଆତ୍ମକଥା'ରେ ସ୍ପଷ୍ଟ ପ୍ରମାଣିତ । କବି ନିଜ ବ୍ୟଥିତ ଅନ୍ତର ପ୍ରତି ନିଜେ କିପରି ସହାନୁଭୂତି ପ୍ରକାଶ କରିଥିଲେ, ତାହା ନିମ୍ନଲିଖିତ ପଙ୍‌କ୍ତିରୁ ଜଣାପଡ଼େ—

"ପଚିଶ ଛବିଶ ବର୍ଷ ହେଲା ଏବେ ଗତ
ପଛକୁ ଚାହିଁଲେ ହୃଦ ଆହା କି ବିକଳ,
ଅତୀତ କେବଳ ମୋର ରୁକ୍ଷ ସଇକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୁର୍ବାଦଳ !"

ଅବଶ୍ୟ ଏହା କବିଙ୍କର ବ୍ୟକ୍ତିଗତ ଜୀବନର ଅନୁଭୂତି । ଏହା ବିନା ଦ୍ୱିଧାରେ ସମସ୍ତଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରେ । ତାଙ୍କ କବିତାରେ ବ୍ୟକ୍ତି ଓ ବ୍ୟକ୍ତି ମଧ୍ୟରେ, ବ୍ୟକ୍ତି ଓ ସମାଜ ମଧ୍ୟରେ ପାର୍ଥକ୍ୟର ସୀମାରେଖା ନ ଥିଲା । ମନୁଷ୍ୟସେବା ଓ ଈଶ୍ୱରଭକ୍ତି ମଧ୍ୟରେ ସେହିପରି ଭେଦଭାବ ନ ଥିଲା । ସେହିମାନେ ନରନାରାୟଣ, ଯେଉଁମାନେ ପ୍ରତି ମୂହୂର୍ତ୍ତରେ ସମାଜରେ ଦଳିତ, ଶୋଷିତ ଓ ନିର୍ଯ୍ୟାତିତ ଏବଂ ଯେଉଁମାନେ ପ୍ରତି ମୂହୂର୍ତ୍ତରେ ଅନ୍ୟର ସହାନୁଭୂତି ଆବଶ୍ୟକ କରନ୍ତି । କବିଙ୍କ ଭାଷାରେ—

"ହୃଦ-କପିଳାସେ, ତୋର ବହେ ପ୍ରେମ-ଝର,
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୁ ଶଙ୍କର ।"

ଏଠାରେ ଏ ଶଙ୍କର ହେଉଛନ୍ତି ଯଥାର୍ଥରେ ମନୁଷ୍ୟପ୍ରାଣର ଦରଦ ମିଶ୍ରିତ ସହାନୁଭୂତି । ଆଉ ଗୋପବନ୍ଧୁ ସେହି ସହାନୁଭୂତିର ଥିଲେ ପୂଜାରୀ ।

ଏକ ଉନ୍ନତ ଜୀବନର ମହନୀୟ ଚିତ୍ର ତାଙ୍କ ରଚନାମାନଙ୍କରେ ପ୍ରତିଫଳିତ । ପରମ୍ପରା ଓ ସଂସ୍କୃତିକୁ ଆଧୁନିକତାର ପ୍ଲାବନରେ ସେ କଦାପି ବଳି ଦେଇ ନାହାନ୍ତି; ବରଂ ସଂସ୍କୃତି ଓ ସଭ୍ୟତାର ଘୂର୍ଣ୍ଣାୟମାନ ଆବର୍ତ୍ତ ମଧ୍ୟରେ କବି ନିଜ ସଂସ୍କୃତି ଓ ପରମ୍ପରାକୁ ଯଥାର୍ଥ ଭାବରେ ଠିକେଇ ପାରିଥିଲେ । ତାଙ୍କ କବିତାରେ ବ୍ୟକ୍ତିର ସେବା, ଈଶ୍ୱରସେବା, ଦେଶର ପ୍ରଶ୍ନ, ବିଶ୍ୱର ପ୍ରଶ୍ନ—ଏସବୁ ନିବିଡ଼ଭାବରେ ପରସ୍ପର ସହିତ ଜଡ଼ିତ ।

ୟୁରୋପୀୟ ସାହିତ୍ୟର ପ୍ରାଚୀନ କୃତି ଓଡ଼େଶୀ (Odysses) ଏକ ମହାନ୍ ଜୀବନର ସଙ୍କେତ ଦେଇଥାଏ । ଆମ ଓଡ଼ିଆ ସାହିତ୍ୟରେ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ସାହିତ୍ୟ ଏହିପରି ସେବା, ସହାନୁଭୂତି ଓ ଆଦର୍ଶରେ ମହିମାମୟ । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଗୋପବନ୍ଧୁଙ୍କ କାବ୍ୟ-କବିତା ସେହିପରି ଉଜ୍ଜ୍ୱଳ ମାନବିକତା ଓ ଆନ୍ତରିକ ସହାନୁଭୂତିରେ ପରିପୂର୍ଣ୍ଣ । ତାଙ୍କ କବିତାର ସଙ୍ଗ ସୀମାହୀନ; କାରଣ ତାହା ହୃଦୟର ରକ୍ତରେ, ଆଖିର ଲୁହରେ ପରିପୁଷ୍ଟ । ଯଦି ପଚରାଯାଏ, ଗୋପବନ୍ଧୁଙ୍କ କବିତାରେ ଆନନ୍ଦ ଓ ଯଥାର୍ଥତା କେଉଁଠି, ତା'ର ଏକମାତ୍ର ଉତ୍ତର ହେଉଛି ଯେଉଁ ବୁଲ୍‌ବୁଲ୍ ପକ୍ଷୀଟି ଧଳା ଗୋଲାପ ଗଛର କଣ୍ଟାରେ

ନିଜର ଛାତିକୁ ଫଟାଇ, ନିଜ ଛାତିରୁ ରକ୍ତ ବୁହାଉଥିଲା ଗୋଲାପର ଧଳା ପାଖୁଡ଼ାକୁ ନାଲି କରିବାପାଇଁ ଏବଂ ଗୋଲାପ ବୁଲ୍‌ବୁଲ୍‌କୁ ଯାହା କହୁଥିଲା ତାହା ହେଉଛି, 'ରେ ବୁଲ୍‌ବୁଲ୍, ତୋ ଛାତିକୁ ମୋ କଣ୍ଟାରେ କ୍ଷତବିକ୍ଷତ କରି ନାଲିରକ୍ତ ନିଗାଡ଼ି ଦେ । ତୋର ସେହି ଛାତିର ଗାଢ଼ ନାଲି ରକ୍ତରେ ମୋର ଧଳା ପାଖୁଡ଼ା ଏକବାରକେ ନାଲି ହୋଇଯାଉ ।' ଗୋପବନ୍ଧୁଙ୍କ ପରି ଦରଦୀ କବିର କର୍ତ୍ତବ୍ୟ ସମାଜର ଦୁଃଖଦୁର୍ଦ୍ଦଶାରେ ନିଜକୁ କ୍ଷତବିକ୍ଷତ କରିବା । ତାହା କ'ଣ ପ୍ରତ୍ୟେକ ଦରଦୀ କବିର କର୍ତ୍ତବ୍ୟ ନୁହେଁ କି ?

—— ——

# ବିଶ୍ୱକବି ଗୋପବନ୍ଧୁ

## ଗଜେନ୍ଦ୍ରନାଥ ସାମଲ

ବିଶ୍ୱକବି ଗୋପବନ୍ଧୁଙ୍କୁ ଏପର୍ଯ୍ୟନ୍ତ ବିଭିନ୍ନ ବିଶେଷଣରେ ଯଥାର୍ଥ ବିଭୂଷିତ କରାଯାଇଅଛି, ଯଥା—ତ୍ୟାଗୀ, ଯୋଗୀ, ସାଧକ, କର୍ମୀ, ଶିକ୍ଷକ, ଭାବୁକ, ସାହିତ୍ୟିକ, ସଂସ୍କାରକ, ପ୍ରେମିକ, ଭକ୍ତ, କବି ପୁଣ୍ୟାତ୍ମା ଓ ଉତ୍କଳମଣି ଇତ୍ୟାଦି । ସେ ବାସ୍ତବରେ ବିଶ୍ୱର ବିଶିଷ୍ଟ ବ୍ୟକ୍ତିଥିଲେ । ତାଙ୍କ ଭାବରେ ବିଶ୍ୱ ନାଗରିକର ଭାବ ଏବଂ ବାଣୀରେ ବିଶ୍ୱମାନବର ବାଣୀ ଅନ୍ତର୍ନିହିତ ଫଲ୍‌ଗୁ ପରି ଭରପୂର ହୋଇ ରହିଥିଲା । କସ୍ତୁରୀ ମୃଗଠାରୁ କସ୍ତୁରୀର ଗନ୍ଧ ଆସ୍ୱାଦନ ମିଳୁଥିଲେ ସୁଦ୍ଧା କସ୍ତୁରୀର ସନ୍ଧାନ ନ ପାଇବା ପର୍ଯ୍ୟନ୍ତ ଯେପରି ପାଇ ନ ପାଇଲା ପରି ଜଣାଯାଏ । ସେହିପରି ବିଶ୍ୱକବି ଗୋପବନ୍ଧୁଙ୍କର କବିତାର ପଦେ ପଦେ ଛନ୍ଦେ ଛନ୍ଦେ ବିଶ୍ୱ ସଙ୍ଗୀତଲହରୀ ଉଦ୍ଭାସିତ ହୋଇ ଉଠୁଥିଲେ ସୁଦ୍ଧା ତାଙ୍କୁ ବରେଣ୍ୟ ବିଶ୍ୱକବି ରୂପେ ଚିହ୍ନିବାର ପରମ ସୌଭାଗ୍ୟ ଏପର୍ଯ୍ୟନ୍ତ ଆମ୍ଭମାନଙ୍କୁ ମିଳି ନ ଥିଲା । ଆଜି କିନ୍ତୁ ଆମର ହୃଦୟନିଧି, ବରେଣ୍ୟ, ଅମର ବିଶ୍ୱକବି ଆଉ ଅପରିଚିତ ହୋଇନାହାନ୍ତି । ତାଙ୍କର ବିଶ୍ୱଭାବ ଏବଂ ବିଶ୍ୱପ୍ରେମ-ପ୍ଲାବିତ କବିତା-କୁସୁମ ଆଉ ବଣମଲ୍ଲୀସଦୃଶ ଉତ୍କଳ ଖଣ୍ଡରେ ଅବଦ୍ଧ ହୋଇ ରହିବାର ନୁହେଁ । ସେ କବିତା-କୁସୁମର ଅପୂର୍ବ ସୌରଭରେ ବିଶ୍ୱ ବ୍ରହ୍ମାଣ୍ଡ ବର୍ତ୍ତମାନ ସୁରଭିତ ହେବାର ସୁଯୋଗ ଆସିଅଛି । ଭକ୍ତ କବି, ପ୍ରକୃତି କବି ଏବଂ ଜାତୀୟ କବି ଗୋପବନ୍ଧୁ ଯେ ବାସ୍ତବରେ ବିଶ୍ୱକବି, ଏଥିରେ ଆଉ ସନ୍ଦେହର ଅବକାଶ ନାହିଁ । ସେ ମହାତ୍ମାଙ୍କ ସମ୍ବନ୍ଧରେ କୁହାଯାଇଥିବା ବିଶ୍ୱପ୍ରୀତି, ସ୍ୱଦେଶମୁକ୍ତି ଓ ଈଶ୍ୱର ଭକ୍ତି ତାଙ୍କ ଜୀବନବ୍ୟାପୀ ସାଧନା ଓ ଭାବନାର ଯେ ତ୍ରିବେଣୀଧାରା—ଏହା ଯଥାର୍ଥ । ସେ ଯଥାର୍ଥରେ ହିଁ ବିଶ୍ୱକବି ।

ବିଶ୍ୱକବି ଗୋପବନ୍ଧୁଙ୍କୁ ବିଶ୍ୱସାହିତ୍ୟିକ ସାର୍ଟିଫିକେଟ ନୋବେଲ ପ୍ରାଇଜ୍ ମିଳିନାହିଁ କିମ୍ବା ବିଶ୍ୱବାସୀ ତାଙ୍କ କବିତା ପୁଷ୍ପର ମକରନ୍ଦ ପାନ କରିବାର ସୁବିଧା ପାଇନାହାନ୍ତି । 'ନଚିକେତା ଉପାଖ୍ୟାନ', 'ଗୋ-ମାହାତ୍ମ୍ୟ, 'ଧର୍ମପଦ', 'କାରାକବିତା', 'ବନ୍ଦୀର ଆତ୍ମକଥା', 'ଅବକାଶଚିନ୍ତା' ଏବଂ ଆଉ କେତେଗୁଡ଼ିଏ କବିତାରୂପକ ଯେଉଁ ଅପୂର୍ବ ମଣିମାଳାରେ ଉତ୍କଳଭାରତୀ ତଥା ବିଶ୍ୱଭାରତୀଙ୍କ ଅଙ୍ଗ ପ୍ରତ୍ୟଙ୍ଗ ବିଭୂଷିତ ହୋଇଉଠିଛି, ତାହାର ବିଚାର କଲେ ବିସ୍ମୟାଭିଭୂତ ହେବାକୁ ହୁଏ ।

ବରେଣ୍ୟ ବିଶ୍ୱକବି ଗୋପବନ୍ଧୁ ଅମାବାସ୍ୟାର ଘୋର ଅନ୍ଧକାରରେ ଆମ୍ଭମାନଙ୍କୁ ଛାଡ଼ି ଦିବ୍ୟଲୋକକୁ ଚାଲିଗଲେ ସୁଦ୍ଧା ଆମର ଆଖି ଖୋଲିଦେବା ପାଇଁ ଶିଖାଇ ଯାଇଛନ୍ତି, ଅନାସକ୍ତ କର୍ମଯୋଗ, ଦେଇ ଯାଇଛନ୍ତି ଅମର ଅନୁଷ୍ଠାନ ଏବଂ ରଖିଯାଇଛନ୍ତି ସତ୍ୟ ଶିବ, ସୁନ୍ଦର ଓ ଅନବଦ୍ୟ ବିଶ୍ୱ-ସାହିତ୍ୟ । ତାହାର ଅନୁସରଣ ଓ ଅନୁଧାବନ କଲେ ଅମା-ଅନ୍ଧକାରରେ ସୁଦ୍ଧା ଆଲୋକ ଉଦ୍ଭାସିତ ହୋଇ ପୁଣ୍ୟପଥ ପ୍ରତିଭାତ ହେବ ।

କୌଣସି କବିଙ୍କର ସାର୍ବଜନୀନ ଭାବକୁ ଦୃଷ୍ଟିପଥରେ ରଖି ବିଶ୍ୱ ପ୍ରେମ, ବିଶ୍ୱଭାବ ଏବଂ ବିଶ୍ୱବାଣୀ ପ୍ରଭୃତିର ବିଚାର କରିବାକୁ ଗଲେ ତାଙ୍କ ଲେଖା ପ୍ରାଚୁର୍ଯ୍ୟକୁ ବିଚାର ପ୍ରସଙ୍ଗକୁ ନେବା ସର୍ବଦା ଗର୍ହିତ । ସେ ଦୃଷ୍ଟିରୁ ଆମର ପ୍ରିୟ କବି ଗୋପବନ୍ଧୁଙ୍କ ସୃଷ୍ଟି ବହୁଳ ନ ହେଲେ ସୁଦ୍ଧା ତାଙ୍କ କବିତାର ବିଷୟବସ୍ତୁ, ପ୍ରେମ ଭାବ ଏବଂ ବାଣୀ ବିଚାର କଲେ ପାଠକମହଲ ଭାବନାସିନ୍ଧୁର ଅତଳ ଗର୍ଭରେ ନିମଜ୍ଜିତ ହୁଏ । କିନ୍ତୁ କବିତାଗୁଡ଼ିକ ଯେ ବିଶ୍ୱବାସୀଙ୍କ ପାଇଁ ଉଦ୍ଦିଷ୍ଟ, ତାହାପଲ୍ଲବଗ୍ରାହୀ ପାଠକ ମହଲକୁ ସୁଦ୍ଧା ସ୍ପଷ୍ଟ ପ୍ରତୀୟମାନ ହୁଏ ।

ବର୍ତ୍ତମାନ କବି ଗୋପବନ୍ଧୁଙ୍କୁ 'ବିଶ୍ୱକବି' କହିବାର ଯଥାର୍ଥତା ଅନୁଶୀଳନ କରାଯାଉ ।

— ୨ —

'ଧର୍ମପଦ' କବିଙ୍କର ଏକ ଅସାଧାରଣ ସୃଷ୍ଟି । ବିଷୟବସ୍ତୁ ଅତି ସୁପରିଚିତ । ଏହା ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିର ସମ୍ବନ୍ଧରେ ଏକ ସୁନ୍ଦର କିମ୍ବଦନ୍ତୀ ଉପରେ ବର୍ଣ୍ଣିତ । ମନ୍ଦିରର ନିର୍ମାତା ଲାଙ୍ଗୁଳା ନରସିଂହ ଦେବ ପୃଥିବୀ ମଧ୍ୟରେ ଉକ୍ତ ମନ୍ଦିରର କଳାକୌଶଳ ଅଦ୍ୱିତୀୟ ହେବ ବୋଲି

କଳ୍ପନା କଲେ । ଆମର ବର୍ଣ୍ଣିତ କବିଙ୍କ ଭାଷାରେ 'ବିଶ୍ୱେ, ସେ ହେବ ଅତୁଳ' । ଆଜ ଧ୍ୱସ୍ତ ବିଧ୍ୱସ୍ତ କୋଣାର୍କ କାଳର କରାଳକବଳରେ ପଡ଼ି ସୁଦ୍ଧା କେବଳ ବିଶ୍ୱବିଖ୍ୟାତ ନୁହେଁ—କୋଣାର୍କ ମନ୍ଦିର ସମ୍ବନ୍ଧୀୟ କିମ୍ବଦନ୍ତୀ ଉପରେ ଲିଖିତ 'ଧର୍ମପଦ' ମଧ୍ୟ ବିଶ୍ୱସାହିତ୍ୟର ଅମୂଲ୍ୟ ମଣି ।

ବାର ବର୍ଷର ବାଳୁତ କୁମାର ଧର୍ମପଦ, ମୁହଁରେ ବାରଶ ବଢ଼େଇଙ୍କର ଜୀବନରକ୍ଷା ପାଇଁ ଆତ୍ମୋତ୍ସର୍ଗ ନିମିତ୍ତ ସର୍ବବାଦୀ ବାଣୀ ବଡ଼ ବିଚକ୍ଷଣତାର ସହିତ ଶ୍ରବଣ କରିପାରିଛନ୍ତି ଆମର ବରେଣ୍ୟ ବିଶ୍ୱକବି ଗୋପବନ୍ଧୁ ।

'ନ ହୋଇ ବ୍ୟାକୁଳ, ଗ୍ରାମ ହିତେ କୁଳ
ବିରଜନ୍ତି ସାଧୁ ଜନ ।
ଦେଶ ହିତେ ଗ୍ରାମ, ଜଗତ କଲ୍ୟାଣେ
କରି ଦେଶ ବିସର୍ଜନ ।''

ଗ୍ରାମର ଉନ୍ନୟନ ପାଇଁ କୁଳତ୍ୟାଗ, ଦେଶର ଉନ୍ନୟନ ପାଇଁ ଗ୍ରାମତ୍ୟାଗ ଏବଂ ବିଶ୍ୱର କଲ୍ୟାଣ ପାଇଁ ଦେଶତ୍ୟାଗ—ଏପରି ସ୍ୱତଃସିଦ୍ଧ ବାଣୀ ଅନୁଭବୀ ବିଶ୍ୱକବି ଗୋପବନ୍ଧୁଙ୍କ ପକ୍ଷରେ ହିଁ ସମ୍ଭବ ।

ବିଶ୍ୱମାନବର ଜୀବନଦର୍ଶନ ସମ୍ବନ୍ଧରେ କବି ଧର୍ମପଦ ମୁହଁରେ କହିଛନ୍ତି--

''କାପୁରୁଷ ପରି ମରିବା ଜଗତେ ନୁହେଁ ନର ପଉରୁଷ
ପରହିତ ସାଧି ମରେ ଯେ ମହୀରେ ସେହି ଏକା ସୁପୁରୁଷ ।
ମାନବ-ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ।''

ବିଶ୍ୱହିତ ଏବଂ ବିଶ୍ୱମାନବର ବାଣୀ ଉତ୍କଳ ତଥା ଭାରତରେ ନୂଆ ନୁହେଁ । କବି ସେଥିପାଇଁ ପୁରାଣରୁ ଦୃଷ୍ଟାନ୍ତ ଦେଖାଇଛନ୍ତି--

''ଭୁବନ ବିଦିତ ଦଧୀଚି ଚରିତ ପୁରାଣେ ତ ଅଛ ଶୁଣି,
କିବା ସ୍ୱସ୍ତି ସ୍ୱସ୍ତି ଦେଲେ ନିଜ ଅସ୍ଥି ବିଶ୍ୱହିତେ ମହାମୁନି ।'

'ଧର୍ମପଦ'ର ଶେଷଭାଗ ଅର୍ଥାତ୍ ନବମ ଅଧ୍ୟାୟ ବିଶ୍ୱକବି ଗୋପବନ୍ଧୁଙ୍କର ଏକ ବିଚିତ୍ର ଉଦ୍ଭାବନ, ବିରାଟ ଅଭିବ୍ୟକ୍ତି । କବିଙ୍କର ଅନ୍ୟାନ୍ୟ ଲେଖା ବିଷୟରକୁ ନ ଆଣି କେବଳ ଉକ୍ତ ଅଧ୍ୟାୟକୁ ଅନୁଧ୍ୟାନ କଲେ ଗୋପବନ୍ଧୁ ଯେ ବାସ୍ତବିକ୍ ବିଶ୍ୱକବି ତାହା ସହଜରେ ପ୍ରତ୍ୟୟ

ହୁଏ । କବିତାଗୁଡ଼ିକର ପ୍ରତ୍ୟେକ ପଦ ଏବଂ ଛନ୍ଦରେ ବିଶ୍ୱର ମହାସତ୍ତା, ବିଶ୍ୱର ଏକୀଭୂତ ପ୍ରାଣ, ବିଶ୍ୱ-ସଙ୍ଗୀତଲହରୀ ତଥା ବିଶ୍ୱରୂପ ଭଗବାନଙ୍କର ବିଶ୍ୱବ୍ୟାପକତା ଫୁଟିଉଠିଛି । ପରମ ସୁନ୍ଦର ଭାବମୟ ଓ ଜୀବନ୍ତ ହୋଇ--

'ଜଳ ସ୍ଥଳ ନଭ ହେଲା ଏକଭାବ ଲଭିଗଲା ବିଚିତ୍ରତା
ଅନନ୍ତ ଅଭେଦେ ପରମ ନିର୍ବେଦେ ବ୍ୟକ୍ତ ବିଶ୍ୱ-ମହାସତ୍ତା ।
× × ×
ହୋଇ ଏକ ଧ୍ୟାନ ମିଳାଇଣ ତାନ ବିଶ୍ୱ-ସଙ୍ଗୀତ-ଲହରେ ।
ଗାଏ ଧର୍ମ ପଦ ପରମ ଆନନ୍ଦେ ଜୟ ଜଗଦୀଶ ହରେ ।"

ବିଶ୍ୱନିୟନ୍ତାଙ୍କ ଦେଶ-କାଳ-ସୀମା ଅତୀତ ମହିମା ବର୍ଣ୍ଣନା କରି ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିର ଚୂଡ଼ାରୁ ବିଶ୍ୱକ୍ଷିତିରେ ଆତ୍ମୋତ୍ସର୍ଗ କରିଛନ୍ତି ବିଶ୍ୱଶହୀଦ ବାର ବରଷର ବାଳୁତ କୁମାର ଧର୍ମପଦ । ତାହା ହୋଇଛି ଆଜି ବିଶ୍ୱସାହିତ୍ୟରେ ଏକ ଅଲୋକସ୍ତମ୍ଭ, ବିଶ୍ୱକବି ଗୋପବନ୍ଧୁଙ୍କ ଲେଖନୀ କାଉଁରୀ ପରଶରେ ।

—ଓ—

କବିଙ୍କର 'ବନ୍ଦୀର ଆତ୍ମକଥା' ଏକ ବିଚିତ୍ର ଓ ଅନୁପମ ସୃଷ୍ଟି । ଏଥିରେ ମଧ୍ୟ ଫୁଟିଉଠିଛି ସାର୍ବଜନୀନ ପ୍ରେମ ଓ ବିଶ୍ୱଗାଥା । କବି ନିଜେ ବିଶ୍ୱପ୍ରେମରେ ତନ୍ମୟ ହୋଇ ସନ୍ତୁଷ୍ଟ ନ ଥିଲେ । ତାଙ୍କର ପ୍ରାଣପ୍ରିୟ ଉତ୍କଳବାସୀ କିପରି ଆନ୍ତର୍ଜାତିକ ପ୍ରୀତିରେ ଉଦ୍ଦୀପିତ ହେବେ, ସେଥିପାଇଁ ସେ ଆହ୍ୱାନ ଦେଇଛନ୍ତି । ବନ୍ଦୀଘରେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରି କହିଛନ୍ତି—

"ଜାତିମୂ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।"

ନିଜେ କାରାକଷ୍ଟ ଭୋଗୁଥିଲେ ସୁଦ୍ଧା ଗାନ୍ଧି ମହାତ୍ମାଙ୍କ କାରାବାସରେ ତାଙ୍କର ପ୍ରାଣକୁ ବିଶେଷ ଆଘାତ ଲାଗିଥିଲା । କିନ୍ତୁ ସେ ଭଲରୂପେ ଜାଣିଥିଲେ ଯେ ମହାତ୍ମା ସାଧନ ଏବଂ ମହାତ୍ମ କଷଣ ଅକାରଣ ହୁଏ ନାହିଁ । ସକ୍ରେଟିସ, ଯୀଶୁ ପ୍ରଭୃତି ଏହାର ଜ୍ୱଳନ୍ତ ଉଦାହରଣ । ସେଥିପାଇଁ କବି ଗୋପବନ୍ଧୁ ବିଶ୍ୱମାନବର ଆଦର୍ଶ-ଜୀବନ ସମ୍ବନ୍ଧରେ ଲେଖିଛନ୍ତି—

"ମାନବ ଜୀବନ ନୁହେଁ ମିଥ୍ୟା ଭ୍ରମ
କିବା କୃଷ୍ଟମାତ୍ର କୌଶଳ ପ୍ରଧାନ ।
ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ,
ତତ୍ତ୍ୱ ଅନୁ ବନ୍ଧ ମାନବର ସତ୍ତ୍ୱ ।"

ଉତ୍କଳ କଥା ଓ ଭାରତ କଥା ଚିନ୍ତା କରି ବିଶ୍ୱସମସ୍ୟା ପ୍ରତି କବି ଉଦାସୀନ ନୁହନ୍ତି—

"ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ
ଭାରତେ ସ୍ୱରାଜ୍ୟ ଜଗତ କଲ୍ୟାଣ
ଜଗତ ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।"

ଅନୁନ୍ନତ ଉତ୍କଳର ସେବା ଓ ଉତ୍କଳର କଲ୍ୟାଣ ଯେ ବିଶ୍ୱସେବା ଓ ବିଶ୍ୱକଲ୍ୟାଣ, ଏହା ବିଶ୍ୱକବି ଗୋପବନ୍ଧୁ ବିଶେଷ ରୂପେ ହୃଦୟଙ୍ଗମ କରିପାରିଥିଲେ । ସେଥିପାଇଁ ଉତ୍କଳହିଁ ଥିଲା ତାଙ୍କର ସାଧନା ପୀଠ ।

ବିଶ୍ୱ ଇତିହାସର ପ୍ରଜାପୀଡ଼କ, ଦୁର୍ବୃତ୍ତ ଶାସକମାନଙ୍କର ଚିତ୍ରଣ ମଧ୍ୟ ସ୍ଥାନ ପାଇଛି ତାଙ୍କର ଅମର କବିତାରେ ଅତି ବାସ୍ତବ ଓ ସରସ ହୋଇ—

"କୁରୁ ଗୃହେ ଜାତ ମାନୀ ଦୁର୍ଯ୍ୟୋଧନ
ଜାଣିଛ ଲଭିଲା କପରି ନିଧନ !
ନ ନେଲା ସେ କଂସ କେତେ ଶିଶୁ-ପ୍ରାଣ
କହ କେତେ ଦିନ ରହିଲା ସେ ତ୍ରାଣ ?
ପଶ୍ଚିମ ରାଇଜେ ହେରଡ଼ ନୃପତି
ଥିଲା କଂସ ସମ ଦୁରାତ୍ମା ଦୁର୍ମତି ।
ପ୍ରଭୁ ଯୀଶୁ ପ୍ରତି ମନେ ବହି ରୋଷ
ପ୍ରଭୁହତ୍ୟା ଆଦି କଲା ନାନା ଦୋଷ ।
ଥିଲା ସେହିପରି ମିଶରେ ଫେରସ
ଗଲେ ଏ ସକଳେ ଯଥାକାଳେ ଧ୍ୱଂସ ।"

କିନ୍ତୁ ଆତ୍ମଶୁଦ୍ଧି ହେଲେ, ସତ୍ୟ ଶାନ୍ତ ପଥରେ ଗଲେ, ଗ୍ରାମରେ ପଞ୍ଚାୟତର ସୁଶାସନ ପ୍ରଚଳିତ ହେଲେ, ଅରଟ ଓ ସୂତାକଟାର ଗୁରୁତ୍ୱ ଉପଲବ୍ଧି କଲେ ଏବଂ ଚୋରି, ନାଶ ଓ ନିଶା ନିବାରିତ ହେଲେ ବିଶ୍ୱର ମଙ୍ଗଳ ହେବ ବୋଲି କବି ଭବିଷ୍ୟତବାଣୀ ଶୁଣାଇ ଯାଇଛନ୍ତି—

"ଏ ଆଶ୍ରରେ ହେବ ଜଗତ ମଙ୍ଗଳ
ଯଥାକାଳେ ମେଘ ବରଷିବ ଜଳ ।"

ସାମ୍ୟ-ଯୋଗୀ, କବି ଗୋପବନ୍ଧୁ—ହିନ୍ଦୁ, ମୁସଲମାନ ତଥା ବିଶ୍ୱ-ଧର୍ମ ସମ୍ବନ୍ଧରେ ବଡ଼ ନିଗୂଢ଼ ତଥ୍ୟ ପ୍ରଚ୍ଚର କରି ଯାଇଛନ୍ତି—

"ଗୁଡ଼ ତେବେ ମନୁଁ ଭେଦ ଅଭିମାନ
ବେଦ କୋରାନରେ କର ସମଜ୍ଞାନ ।
ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟି ଆନ
ଶିଖ୍ ଜୈନ ଯେତେ ଭାରତ ସନ୍ତାନ ।"

ସବୁ ଧର୍ମର ସାର ଏକ । ପାଣିକୁ କେହି ଜଳ, କେହି ୱ୍ୟାଟର, କେହି ଆକ୍ୱା ଇତ୍ୟାଦି ବିଭିନ୍ନ ନାମରେ ନାମିତ କଲା ପରି ଭଗବାନଙ୍କୁ ବିଭିନ୍ନ ଧର୍ମାବଲମ୍ବୀ ବିଭିନ୍ନ ନାମରେ ନାମିତ କରି ପୂଜା କରୁଛନ୍ତି । ଅତି ଆଶ୍ଚର୍ଯ୍ୟ ଏବଂ ଘୋର ପରିତାପର ବିଷୟ ଯେ ଅଦ୍ୟାବଧି ବିଂଶ ଶତାବ୍ଦୀର ପରମାଣୁଯୁଗରେ ତଥାକଥିତ ବିଜ୍ଞାନର ଚରମ ସୀମାରେ ଉପନୀତ ହୋଇ ସୁଦ୍ଧା ମାନବସମାଜ ଏ ଗୂଢ଼ତତ୍ତ୍ୱ ହୃଦୟଙ୍ଗମ କରିପାରି ନ ଥିବାରୁ ଧର୍ମ ନାମରେ ନାନା ବାଦ-ବିସମ୍ବାଦ ଜାତ ହୋଇ ବିଶ୍ୱ-ସଭ୍ୟତାରେ ତଥା ଆନ୍ତର୍ଜାତିକ ପରିସ୍ଥିତିରେ ଘୋର ଜଟିଳତା ସୃଷ୍ଟି କରୁଛି । କିନ୍ତୁ ବିଶ୍ୱମାନବସମାଜ ହିନେ ନା ହିନେ ବିଶ୍ୱକବି ଗୋପବନ୍ଧୁଙ୍କର ଏ ମହତ୍ତ୍ୱ ବାଣୀ ବୁଝି ଏ ରାସ୍ତାରେ ଚାଲିବାକୁ ହେବ; ନଚେତ୍ ବିଶ୍ୱଶାନ୍ତି ଏକ ପ୍ରହେଳିକା ସଦୃଶ ହୋଇ ରହିଥିବ ।

ଭାରତର ସ୍ୱାଧୀନତାରେ, ଭାରତର ସୁଶାସନରେ, ଭାରତର ପ୍ରଜାମଙ୍ଗଳରେ ବିଶ୍ୱମଙ୍ଗଳ ନିହିତ । ସେଥିପାଇଁ 'ବନ୍ଦୀର ଆତ୍ମକଥା' ଉପସଂହାରରେ ବିଶ୍ୱକବି ଗାଇଛନ୍ତି ବଜ୍ରନିର୍ଘୋଷ ବାଣୀ—

"ହେବ ପ୍ରତିଷ୍ଠିତ ମହର୍ଷି ସମ୍ମତ,
ଜାଣିବ ଭାରତ, ଦେଖିବ ଜଗତ ।
ବିରାଜିବ ବିଶ୍ୱେ ଏକତା, ସମତା,
ଶାନ୍ତି ଉଚ୍ଚାରିବେ ସ୍ୱରଗେ ଦେବତା ।"

—୪—

'କାରାକବିତା' ବିଶ୍ୱକବି ଗୋପବନ୍ଧୁଙ୍କର ଏକ ଅଦ୍ୱିତୀୟ ସୃଷ୍ଟି । ୧୯୨୩-୨୪ରେ ଏହା ହଜାରିବାଗ ଜେଲ୍‌ରେ ରଚିତ ହୋଇଥିଲା ।

ଏଥିରେ ନିତ୍ୟଧାମ ନୀଳାଚଳ ଏବଂ ବିଶ୍ୱର ମିଳନଚିତ୍ରପ୍ରଭୃତି ୧୩ ଗୋଟି କବିତା ସ୍ଥାନ ପାଇଅଛି । ଏଥିରେ ମଧ୍ୟ ବିଶ୍ୱବାଣୀ, ବିଶ୍ୱଚିତ୍ର ତଥା ବିଶ୍ୱସମସ୍ୟା ଛନ୍ଦେ ଛନ୍ଦେ ପ୍ରସ୍ଫୁଟିତ—

'ନିତ୍ୟଧାମ ନୀଳାଚଳ' କବିତାରେ ପବିତ୍ର ମହୋଦଧି ସୁଶୋଭିତ, ଜାତିଭେଦ ଏବଂ ଧର୍ମଭେଦରହିତ, ସାମ୍ୟ, ମୈତ୍ରୀ ମନ୍ତ୍ରରେ ନିନାଦିତ ନୀଳାଚଳଧାମରେ କିଏ ବାସକରି ପରିଶେଷରେ ଦେହ ତ୍ୟାଗ କରିବ—ଏହି ପ୍ରଶ୍ନର ଉତ୍ତରରେ ବିଶ୍ୱହିତ ପ୍ରତି ଗୁରୁତ୍ୱ ଆରୋପ କରାଯାଇ କୁହାଯାଇଛି—

"ସେହି, ନାହିଁ ଯାର ନିଜ ପର ଜ୍ଞାନ
ପାଏ ମିତ ଯାର ସ୍ନେହ ସନମାନ;
ବିଶ୍ୱହିତେ ଯାର ଆହାର ବିହାର
କରେ ବିଶ୍ୱହିତେ ଯେ ଜୀବନ ଦାନ"

ବାସ୍ତବିକ୍ ବିଶ୍ୱବିଖ୍ୟାତ ଜଗନ୍ନାଥଧାମସମ୍ବନ୍ଧରେ ବିଶ୍ୱକବି ଗୋପବନ୍ଧୁଙ୍କ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ । କବି ବାସ୍ତବରେ ଉତ୍କଳର କିମ୍ବା ଭାରତର ନୁହନ୍ତି—ସେ ସମଗ୍ର ବିଶ୍ୱବାସୀଙ୍କର ପ୍ରତିନିଧି । ସେଥିପାଇଁ କବିତାଗୁଡ଼ିକରେ ଫୁଟିଉଠିଛି, ସାର୍ବଜନୀନତା ଏବଂ ବିଶ୍ୱପ୍ରତିନିଧିତ୍ୱ । 'କାହିଁ ଅଛ' କବିତାରେ ବିଶ୍ୱରୂପ ଭଗବାନଙ୍କ ସମ୍ବନ୍ଧରେ କବି କହିଛନ୍ତି—

"ସାରା ବିଶ୍ୱ ଭରି ପ୍ରକାଶିଛ ହରି !
ବେଦ ବଦେ ସଙ୍ଗୀତରେ ହେ,
ରୂପରେଖ କାହିଁ ଏବେ ଦିଶୁ ନାହିଁ
ବାହାରେ କିବା ଭିତରେ ହେ ।"

'ପିତୃପକ୍ଷ ତର୍ପଣ' କବିତାରେ କବି ନିଜର ପିତୃପୁରୁଷଙ୍କପାଇଁ ନୁହେଁ, ସମଗ୍ର ବିଶ୍ୱମାନବସମାଜର ପ୍ରତିନିଧିତ୍ୱ କରି ବିଶ୍ୱର ପିତୃପୁରୁଷମାନଙ୍କୁ ତର୍ପଣ ଅର୍ପଣ କରି ବଜ୍ରନିର୍ଘୋଷରେ ଆହ୍ୱାନ କରିଛନ୍ତି—

"ଆସ ବିଶ୍ୱେଦେବା, ଆସ ମହର୍ଷିନିବହ
ଆସ କୁରୁକୁଳ ବୃଦ୍ଧ ଭୀଷ୍ମ ପିତାମହ ।
× × ×
ନିଖିଳ ବ୍ରହ୍ମାଣ୍ଡବାସୀ ସର୍ବ ଚରାଚର,
ଦେବତା ଅସୁର ନାଗ ରକ୍ଷ ସିଦ୍ଧ ନର ।

ଯେଉଁ ମୋର ଜଳାଞ୍ଜଳି ଯେଉଁ ନମସ୍କାର,
ଦିବ୍ୟ ଅବଧାନେ ସର୍ବେ କର ହେ ବିଚାର ।"

ସ୍ୱାଧୀନଚେତା କବି ଗୋପବନ୍ଧୁ ଓଡ଼ିଶାବାସୀ କିମ୍ବା ଭାରତବାସୀଙ୍କ ସମ୍ବନ୍ଧରେ ନୁହେଁ, ବିଶ୍ୱମାନବସମାଜର ସ୍ୱାଧୀନତା ଅଧିକାର ସମ୍ବନ୍ଧରେ କହି ଯାଇଛନ୍ତି—

"ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିଚାର ।
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି,
ଚାରି ସ୍ତମ୍ଭେ ମାନବରି ସମାଜ ସଂସ୍ଥିତି ।"

କବି ଏକା ନୁହନ୍ତି, ଭାରତର ଶତ ଶତ ସନ୍ତାନ କାରାବରଣ କରିଛନ୍ତି । ପ୍ରଜାବର୍ଗ ଯଦି ରାଜଶାସନରେ ଅସନ୍ତୁଷ୍ଟ ହୁଅନ୍ତି, ତେବେ ସେ ଶାସନ ତିଷ୍ଠି ବ ନାହିଁ—ଶାସନକଳ ଭୁଷୁଡ଼ି ପଡ଼ିବ; ବିପ୍ଳବ ସୃଷ୍ଟି ହେବ; କିନ୍ତୁ ଶାନ୍ତି, ମୈତ୍ରୀ, ବିଜ୍ଞାନ, ଶିକ୍ଷା, ସଭ୍ୟତା ଓ ସଂସ୍କୃତିପୀଠ, ଦେବଭୂମି, କର୍ମଭୂମି ଓ ଧର୍ମଭୂମି ଭାରତରେ ହିଂସା ନଳ ପ୍ରଜ୍ୱଳିତ ନ ହେଉ, ରକ୍ତାକ୍ତ ହତ୍ୟା ନ ହେଉ—

"ଅହିଂସାର ଆଦିସ୍ଥାନ ଏ ଋଷି ଆଶ୍ରମ,
ଶିଖାଉ ଜଗତେ ପୁଣି ଅହିଂସା ନିୟମ ।"

ପୁନରପି ବିଶ୍ୱ-ସମାଜର ପିତୃପୁରୁଷଙ୍କୁ ତିଳ-ତର୍ପଣ କରି କହିଛନ୍ତି—

"ବିଶ୍ୱବାସୀ ଚରାଚରେ କରି ଆମନ୍ତ୍ରଣ,
ମୁଁ ଯେ ଏଥି କରେ ଜଳ-ଅଞ୍ଜଳି ଅର୍ପଣ ।"

ଏତିକରେ ବିଶ୍ୱକବି ଗୋପବନ୍ଧୁଙ୍କ ଆତ୍ମା ତୃପ୍ତହୋଇ ନାହିଁ—କବିତାର ଉପସଂହାରରେ ପୁଣି ବିଶ୍ୱବିଶ୍ରୁତ, ମଧୁମୟ, ରସପୁଷ୍ଟ, ଅପୂର୍ବ ବିଶ୍ୱସଙ୍ଗୀତ ଗୀତ କରି କହିଛନ୍ତି—"ହେ ବିଶ୍ୱପିତୃପୁରୁଷଗଣ ! ଯଦି କାରାବାସରେ ଆମ୍ଭମାନଙ୍କର କଷଣ ଜାଣିପାରୁଅଛ—ତାହେଲେ ଆମ୍ଭମାନଙ୍କୁ ଆଶୀର୍ବାଦ କର । ତୁମ୍ଭର ସୁକୃତବଳରେ ସ୍ୱର୍ଗରାଜ୍ୟରୁ ପବିତ୍ର ପ୍ରେରଣା ଓ ଅମୃତ-ଝରଣା ଝରୁ ଭାରତ ତଥା ବିଶ୍ୱରେ—

"ହେଉ ମଧୁମୟ ଉଷା, ପ୍ରଦୋଷ ରଜନୀ,
ନକ୍ଷେତ୍ରଦେଶେ ମଧୁମୟ ରବି ଦିନମଣି ।

ମଧୁମୟ ରୂପେ ହୋଇ ବିଶ୍ୱ ନିନାଦିତ
ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ ସଙ୍ଗୀତ ।''

ଆମର ମଧୁମୟ କବି ଗୋପବନ୍ଧୁଙ୍କ ମଧୁଝରା ଲେଖନୀରୁ ହିଁ ଏପରି ଅଭିଳାଷ ମଧୁମୟ ବିଶ୍ୱସଙ୍ଗୀତ ସମ୍ଭବ । 'ବନ୍ଦୀର ବିରହ ବ୍ୟଥା' କବିତାରେ ମଧ୍ୟ

''ସୁବର୍ଣ୍ଣ ବିଶୁଦ୍ଧ କମ୍ପା ସେ ଅଟେ ମିଶ୍ରିତ,
ଜଣାପଡ଼େ ଅନଳରେ ହେଲେ ପରୀକ୍ଷିତ''

ପରି ଫୁଟି ଉଠିଛି ଶୁଦ୍ଧ, ସ୍ୱଚ୍ଛ, ବିଶ୍ୱ-ପ୍ରୀତି ଏବଂ ବିଶ୍ୱ-ପ୍ରକୃତିର ଚିତ୍ର ।··· ···ମଧୁର ବସନ୍ତ ସମୟ, ସୂର୍ଯ୍ୟ ଅସ୍ତହେବା ଉପରେ—ତାଙ୍କର ହୃଦୟ-ସର୍ବସ୍ୱ ପ୍ରାଚୀ ରାଣୀଠାରୁ ବିଦାୟ ନେଉଥିବାରୁ, ଦେବତା ହେଲେ ସୁଦ୍ଧା ସୂର୍ଯ୍ୟଙ୍କ ପ୍ରାଣରେ ଆଘାତ ଆସୁଛି । କବି ଏହି ଭାବନାରେ ବିହ୍ୱଳ ହୋଇ ସିପାହୀକୁ କହୁଛନ୍ତି—ହେ ସିପାହୀ ଭାଇ, ଟିକେ ରହ, ମୁଁ ପ୍ରଣୟ ପ୍ରଭାବ ଦେଖିବାର ସୁବିଧା ପାଇବି—

''ପ୍ରଣୟ-ପୀୟୂଷେ ମିଶିଛି କମ୍ପା ବିରହ-ବିଷ,
ବିଶ୍ୱବାସୀ ପ୍ରତି ବିଚିତ୍ର ଏ କି ବିଧି ଆଶିଷ !

× × × ×

ବିଶ୍ୱ ପ୍ରକୃତିରେ ଦେଖିଲେ ସମଦୁଃଖବେଦନା,
ତାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।''

ଶେଷରେ ଅହିଂସାବିଧୌତ, ସତ୍ୟାଗ୍ରହୀ, ବିଶ୍ୱକବି ହିଂସା-ଶାସନର ପ୍ରତିରୂପ ବିରୋଧରେ ବିକ୍ଷୋଦ୍‌ଗାର କରି ବାକ୍ୟବାଣ ନିକ୍ଷେପ କରିଛନ୍ତି—

''ଯମଦୂତ ହୃଦେ କରୁଣା କାହୁଁ ବସିବ ଭଲେ ?
ଅଧିକ ନ କହି ମର୍ଯ୍ୟାଦା ଜଗି ପଶିବ ବଳେ ।''

'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାରେ ନବମଲ୍ଲିକାଙ୍କ ମୁଣ୍ଡକୁ ହସଠାରୁ 'ଗାଈଆଳ ପିଲା ଗୋଠୁଁ ବାହୁଡ଼ାଇ ଆଣୁଥାଏ ଗାଈ ବେଣୁ ବଜାଇ' ଏବଂ 'ପ୍ରେମର କି ଏହି ପରିଣାମ' କବିତାରେ କିଶୋର ବୟସର ପ୍ରାଣ ମିଳନ, ଯୌବନର ସରସଭାବରେ ହୃଦୟ-ପ୍ରସାରଣ ଓ ପ୍ରୌଢ଼ର—

''ବିହିଯାଏ ଦୂରେ ଯା'ର ବିଶ୍ୱପ୍ରେମିକତା
ଈର୍ଷାନଳେ ଜଳେ ଆଦ୍ୟ ନିକଟ ମମତା ।''

ପ୍ରତ୍ୟେକରେ ଛନ୍ଦେ ଛନ୍ଦେ ଫୁଟିଉଠିଛି ବିଶ୍ୱଭାବନା ଓ ବିଶ୍ୱଦରଦ ।

'କାଳି କବିତା'ର ଶେଷ ଲେଖା ହେଉଛି 'ବିଶ୍ୱର ମିଳନ ଛନ୍ଦ' । ଏହିପରି କବିତାର ନାମକରଣରୁ ସେ ଯେ ବାସ୍ତବିକ ବିଶ୍ୱକବି ଥିଲେ, ତାହା ସ୍ପଷ୍ଟ ପ୍ରତୀୟମାନ ହୁଏ । ସୂର୍ଯ୍ୟ ଏବଂ ପଦ୍ମ ବହୁ ଦୂରରେ ଥିଲେ ସୁଦ୍ଧା ଉଦିତ ହେବାକ୍ଷଣି ବାଳ-ରବି ଆଲିଙ୍ଗନ କରେ ପ୍ରସ୍ଫୁଟିତ ନଳିନୀକୁ । ବାୟୁ ଅନନ୍ତ ପଥରେ ଜାତ ହେଲେ ସୁଦ୍ଧା ବନ, ବାରି, ଗିରି ନ ବାରି ଚୁମ୍ବନ ଦିଏ ଗିରିଗୁହା-ମୁଖରେ । ପ୍ରେମିକ କବିଙ୍କ ମନରେ ପ୍ରଶ୍ନ ଉଠିଛି, ବିଶ୍ୱରେ ଏପରି ମିଳନ ସମ୍ଭବ ହେଉଥିବା ବେଳେ ତାଙ୍କ ଜୀବନରେ କଅଣ ପ୍ରେମପୀୟୂଷର ଆଦାନ ପ୍ରଦାନ ହେବ ନାହିଁ ? ଘୋର ହାହା-କାରରେ କ'ଣ ତାଙ୍କ ଜୀବନ-ପ୍ରଦୀପ ଲିଭିଯିବ ? କବିଙ୍କୁ କଅଣ ଈଶ୍ୱର ପ୍ରୀତିସୁଧାରୁ ଆଦର, ଆଲିଙ୍ଗନ ଓ ଗୁରୁଚୁମ୍ବନ ମିଳିବ ନାହିଁ ?

"ମିଳିବ ନାହିଁ କି ସେ ପୀରତି-ସୁଧା
ମୋଲାଗି ଶୁଷ୍କ କି ଏ ବିଶ୍ୱ ବସୁଧା ?"

ପର ମୁହୂର୍ତ୍ତରେ ଭାବାନ୍ତର ଆସିଛି । କବି କହିଛନ୍ତି—ନା, ନା, ତାଙ୍କପାଇଁ ସତ୍ୟ, ଶିବ, ସୁନ୍ଦର, ଅଗତିଗତି, ପତିତପାବନ ଅଛନ୍ତି । ହୃଦ-ପଲଙ୍କରେ ଫୁଲଶେଯ ସଜାଇ ସେ ତାଙ୍କୁ ଚାହିଁ ରହିଛନ୍ତି—ତାଙ୍କର ଦର୍ଶନ ମିଳିଲେ ହୃଦକନ୍ଦରରେ ବାନ୍ଧିରଖି ସେ ପ୍ରାଣଭରି ଚୁମ୍ବନ ଦେବେ । ସେତେବେଳେ ବିଶ୍ୱକବିଙ୍କ ପ୍ରାଣ ବିଶ୍ୱପ୍ରେମପରମାନନ୍ଦରେ ନାଚି ଉଠିବ—

"ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ ।
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମ-ପରମାନନ୍ଦେ ।"

ଗିରି, ସାଗର, ନଦୀ, ତପନ, ଶଶୀ ସମସ୍ତେ ଚୁମ୍ବନ କରିବେ ତାଙ୍କୁ । କବିଙ୍କ ପ୍ରାଣ ବିଶ୍ୱପ୍ରେମଧାରାରେ ଭାସିଉଠିବ । ଏ ବିଶ୍ୱ ହିଁ ହେବ କବିଙ୍କର ଯଥାର୍ଥ ପ୍ରେମପସରା—

"ମୋ ପ୍ରାଣ ପ୍ରେମଧାରାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମପସରା ।"

ଧନ୍ୟ କବିଗୁରୁ ! ଧନ୍ୟ ବିଶ୍ୱକବି !! ଧନ୍ୟ ତୁମର ବିଶ୍ୱପ୍ରେମ !!!

— ୫ —

କବି ଗୋପବନ୍ଧୁଙ୍କ 'ଅବକାଶ ଚିନ୍ତା' ଏକ ରହସ୍ୟମୟ କୃତି । ଏଥିରେ ସନ୍ନିବେଶିତ ହୋଇଛି ପ୍ରାର୍ଥନା, ବାଣୀ, କବିତା, କାମ, କ୍ରୋଧ, ମୋ ବାମ, ଗ୍ରୀଷ୍ମେ ଖଣ୍ଡାଗଛ, ଗୋଟିଏ କାଙ୍କଣଗଛ, କୋକିଳ, ନୀରବ ପ୍ରଭୃତି ୩୯ ଗୋଟି କ୍ଷୁଦ୍ର କବିତା—ବିଶ୍ୱବ୍ରହ୍ମାଣ୍ଡର ସୁପରିଚିତ ବିଷୟବସ୍ତୁ । କ୍ଷୁଦ୍ର କ୍ଷୁଦ୍ର ଜଳକଣାରେ ମହାସାଗର ଏବଂ କ୍ଷୁଦ୍ର ଧୂଳିକଣାର ସମଷ୍ଟିରେ ବସୁନ୍ଧରାର ଉତ୍ପତ୍ତି ପରି କ୍ଷୁଦ୍ର କ୍ଷୁଦ୍ର ବିଷୟବସ୍ତୁର ସମାବେଶରେ ସୃଷ୍ଟି ହୋଇଛି—ଅନବଦ୍ୟ ବିଶ୍ୱସାହିତ୍ୟ । ପ୍ରାର୍ଥନାରେ ଧର୍ମନିରପେକ୍ଷ ବାଣୀ ଶୁଣାଇ କବି ବିଶ୍ୱମୈତ୍ରୀ ବାର୍ତ୍ତା ଗାଇଛନ୍ତି—

"ହିନ୍ଦୁ ଖ୍ରୀଷ୍ଟ ଜୈନ ମୁସଲମାନ
ଭେଦ ଭୁଲି ଏବେ ସର୍ବେ ସମାନ;
ଭ୍ରାତୃ-ପ୍ରେମ-ଡୋରେ ହୋଇଣ ବାନ୍ଧ
ଜଣାଉଛୁ ତବ ଛାମୁରେ କାନ୍ଦ ।"

ଉତ୍କଳ ବିଶ୍ୱବ୍ରହ୍ମାଣ୍ଡରୁ ସ୍ୱତନ୍ତ୍ର ନୁହେଁ । ସେଥିପାଇଁ ବିଶ୍ୱର ଭୟଙ୍କର ଜୀବନ-ସମରରେ ଉତ୍କଳବାସୀ ପାଦ ମିଳାଇ ଚାଲିବାକୁ କବି ଆହ୍ୱାନ କରିଛନ୍ତି—

"ସଂସାର ଭୁମୁଳ ରଣପ୍ରାଙ୍ଗଣେ,
ଉତ୍କଳର ଧନ ତନୟଗଣେ;
ପଛରେ କେବେହେଁ ନ ପଡ଼ୁ ଦେବ···"

ମାତ୍ର ପର ବିଷ୍ଟାରେ ନୁହେଁ—ମହୁମାଛି ପରି ମଧୁରେ ସର୍ବଦା ଲକ୍ଷ୍ୟ ରଖିବା କବିଙ୍କର କାମନା ଥିଲା । ସେଥିପାଇଁ ବାଣୀ କବିତାରେ ମା ବୀଣାପାଣିଙ୍କୁ ବନ୍ଦନା କରି କହିଛନ୍ତି—ମା ! ତୋର ପ୍ରସାଦରେ—

"···ବାସ୍ତବ ବିଶ୍ୱର ଯେତେ ନୀରସ ଘଟନା
ପ୍ରବେଶ ନ କରୁ କେବେ ମୋ ସୁଖ-ପ୍ରସାଦେ ।

'କାଠଯୋଡ଼ୀଶିରେ ସାୟଂକାଳ' କବିତାରେ ପଶ୍ଚିମାକାଶ ବିଭିନ୍ନ ବିଚିତ୍ର ରଙ୍ଗରେ ରଞ୍ଜିତ ହୋଇଉଠିଛି । ପାଣ୍ଡୁର, ଶ୍ୟାମଳ, କଳା, ଧଳା କେତେ କଣ; ସତେ ଯେପରି ହୃଦୟର ଭାବନାରାଜି ଆକାଶରେ ପ୍ରତିଫଳିତ ହୋଇଉଠିଛି—ଠିକ୍ ମହତ୍ ଲୋକର ହୃଦୟ

ପରି । ଏହି କଥା ବର୍ଣ୍ଣନା କରୁ କରୁ କବି ବିଶ୍ୱପ୍ରେମରେ ବିମୁଗ୍ଧ ହୋଇପଡ଼ିଛନ୍ତି—

"ସର୍ବ ଅନୁଭୂତି ସର୍ବଭୂତେ ତା'ର,
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର
ସେହି ନିଜେ ବିଶ୍ୱ, ବିଶ୍ୱମଧ୍ୟେ ସେହି
ଅନ୍ୟ ହୋଇ ତା'ର ଆଉ କେହି ନାହିଁ ।"

କବିଗୁରୁଙ୍କ ବିଶ୍ୱଭାବନା ଓ ବିଶ୍ୱପରିବାରର ପ୍ରମାଣ ଏହାଠାରୁ ଆଉ ଅଧିକ କଅଣ ହୋଇପାରେ ?

ହଠାତ୍ ସୂର୍ଯ୍ୟ ଅସ୍ତ ହୋଇଯିବାରୁ ସବୁ ଅନ୍ଧକାର ହୋଇ-ଉଠିଲା—ଠିକ୍ ନିତିଦିନିଆ ପୃଥିବୀରେ ଘଟଣାସଦୃଶ ପରି । ବିଶ୍ୱ-ଭାବନାରେ ବିହ୍ୱଳ କବି ଗାଇଛନ୍ତି—

"ଘଟୁଅଛି ନିତି ଏପରି ଭବେ ଘଟନାଚୟ
ଆଖି ବୁଜିଦେଲେ ସକଳ ବିଶ୍ୱ ଅନ୍ଧାରମୟ ।"

ସୂର୍ଯ୍ୟ ଅସ୍ତ ହେଲେ, ମୁହଁଅନ୍ଧାର ହେଲା । ମୃଦୁ ଊର୍ମିମଞ୍ଜୁଳ ଯେଉଁ ନୟନାଭିରାମ ସୌନ୍ଦର୍ଯ୍ୟ ସୃଷ୍ଟି କରୁଥିଲେ, ଆଉ ଦିଶିଲା ନାହିଁ । ଏହି ଭାବନାରେ ବିଶ୍ୱକବି ଗୋପବନ୍ଧୁଙ୍କ ପ୍ରାଣରେ ଆସିଯାଇଛି ବିଶ୍ୱର କ୍ଷଣଭଙ୍ଗୁର ଦାର୍ଶନିକ ଚିନ୍ତା—

"ଏହି ଦଶା ଦିନେ ଲଭିବ ଖିଳ ବିଶ୍ୱମଣ୍ଡଳ
ସର୍ବଗ୍ରାସୀ କାଳ ଅନ୍ଧାରେ ମଜ୍ଜିଯିବ ସକଳ ।"

'ବ୍ରାହ୍ମଣ ଗୃହସ୍ଥମାନଙ୍କ ପ୍ରତି' କବିତାରେ ବିଶ୍ୱକବି କହିଛନ୍ତି—ଖାଲି ଜାତିପାଇଁ ନୁହେଁ, ଦେଶପାଇଁ ନୁହେଁ, ବିଶ୍ୱହିତପାଇଁ ଆମର ପୂର୍ବପୁରୁଷମାନେ ଜୀବନ ଦାନ କରିଛନ୍ତି । ଖାଲି ବ୍ରାହ୍ମଣକୁଳରେ ଜାତ ବୋଲି ବୃଥା ଗର୍ବ ଅଭିମାନ ନ କରି ପ୍ରକୃତିରେ ବ୍ରହ୍ମକର୍ମ ସମ୍ପାଦନ କରି ଅର୍ଥାତ୍ ବ୍ରହ୍ମଜ୍ଞ ବା ବ୍ରାହ୍ମଣ ହୋଇ ସମସ୍ତେ ଏକ ଈଶ୍ୱରଙ୍କ ସନ୍ତାନ ବୁଝି ବିଶ୍ୱହିତସାଧନରେ ତତ୍ପର ହୁଅ—

"ବିଶ୍ୱହିତେ କଲେ ଶୋଣିତ ତର୍ପଣ
ସେ କଥା କି ଆଜି ନ ହୁଏ ସ୍ମରଣ ?
ନିଜ ସୁଖ ଲାଗି ଜାତି ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।"

ବିଶ୍ୱପ୍ରୀତି ଏବଂ ବିଶ୍ୱହିତର ପରମ ଅନୁଭୂତି ଏବଂ ଚରମ ପରାକାଷ୍ଠା ଏହାଠାରୁ ଆଉ ଅଧିକ କଅଣ ହୋଇପାରେ ?

'ନୀରବ' କବିତାରେ କବି ନୀରବତାରେ ନିଖିଳ ବିଶ୍ୱର ନିଗୂଢ଼ ମନ୍ତ୍ର ନିହିତ ଥିବାର ପ୍ରତିପାଦିତ କରି କହିଛନ୍ତି—

"ନୀରବେ ବଢ଼ଇ ଚନ୍ଦ୍ରଲତା ମହୀଧର
ନୀରବ ନିଖିଳ ବିଶ୍ୱ ନିଗୂଢ଼ ମନ୍ତ୍ର ।

\+ + +

ନୀରବେ ଜଗତ କରେ ନିଜ କକ୍ଷେ ଗତି
ନୀରବ ନିଖିଳ ବିଶ୍ୱ ନିଗୂଢ଼ ଶକତି ।"

ଆଜି ସ୍ୱାଧୀନ ଭାରତର ବିଭିନ୍ନ ସରକାରଙ୍କ ପକ୍ଷରୁ ସ୍କୁଲ, କଲେଜର ଛାତ୍ର ଓ ଶିକ୍ଷକମାନଙ୍କ ନୈତିକତାର ପ୍ରସାରପାଇଁ ଦୈନନ୍ଦିନ ଶିକ୍ଷା ଆରମ୍ଭରେ ନୀରବରେ ଧ୍ୟାନସ୍ଥ ହୋଇ ନୀରବତା ପାଳନପାଇଁ ନିର୍ଦ୍ଦେଶ ଦିଆଯାଉଛି; କିନ୍ତୁ ଦୂରଦ୍ରଷ୍ଟା ବିଶ୍ୱକବି ଗୋପବନ୍ଧୁ ବହୁପୂର୍ବରୁ ନୀରବତାର ଗୁରୁତ୍ୱ ଶିକ୍ଷା ଦେଇ ଯାଇଛନ୍ତି । 'ଭକ୍ତ କବିବର ଶ୍ରୀଜଗନ୍ନାଥ ଦାସ' କବିତାରେ ବିଶ୍ୱକବି କହିଛନ୍ତି—

"ସୁକବି ପ୍ରଶଂସା ପାଇବାକୁ ଆଶା
ମନରେ ନ ଥିଲି ପୋଷି
ତଥାପି ଉତ୍କଳ ଭାବୀ କବିକୁଳ
ହେବେ ତୁମ୍ଭ ନାମ ଘୋଷି ।"

ବାସ୍ତବରେ ଏହି କବିବାଣୀ କେବଳ ଶ୍ରୀଜଗନ୍ନାଥ ଦାସଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ; ତାଙ୍କର ଭାଷା ବର୍ତ୍ତମାନ ତାଙ୍କରିପାଇଁ ମଧ୍ୟ ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ । ସୁକବିର ଆଶା ତାଙ୍କଠାରେ ତିଳେମାତ୍ର ନ ଥିଲେ ସୁଦ୍ଧା ଆମେ ଯେ ଆଜି ତାଙ୍କର କବିତାରୁ ବିଶ୍ୱସାହିତ୍ୟର ତଥା ବିଶ୍ୱମାନବର ମହତ୍ତ୍ୱ ବାଣୀ ଅନୁସନ୍ଧାନ କରି ଅନୁପ୍ରାଣିତ ହୋଇ ଉଦ୍ଦୀପିତ ହୋଇପାରିବୁ, ଏହା ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲେ ।



ବିଶ୍ୱକବି ଗୋପବନ୍ଧୁଙ୍କ ଉଚ୍ଚାଙ୍ଗ ଦର୍ଶନ 'ନଚିକେତା ଉପାଖ୍ୟାନ' ସମ୍ବନ୍ଧରେ ବର୍ତ୍ତମାନ ଆଲୋଚନା କରି ନ ପାରିବାରୁ ପାଠକ ପାଠିକାଙ୍କ ନିକଟରେ କ୍ଷମାଭିକ୍ଷା କରୁଅଛୁ । ବ୍ରହ୍ମବେତ୍ତା, ସ୍ଥିତପ୍ରଜ୍ଞ, ନିଷ୍କାମ,

ସାମ୍ୟଯୋଗୀ, ଜ୍ଞାନଯୋଗୀ, କର୍ମଯୋଗୀ, ନିରହଙ୍କାର, ନିଃସ୍ପୃହ, ସ୍ଥିତଧୀ, ମତିମାନ୍, ମୁକ୍ତସଙ୍ଗ, ବିଶ୍ୱବନ୍ଧୁ, ଓ ବିଶ୍ୱକବି ଗୋପବନ୍ଧୁଙ୍କର ବ୍ୟବସାୟାତ୍ମିକା ବୁଦ୍ଧିରେ ପ୍ରଣୀତ ବିଶ୍ୱସାହିତ୍ୟର ଭାଷା, ଭାବ ଓ ଶୈଳୀର ଆଲୋଚନା ଓ ବିଶ୍ଳେଷଣ କରି ବିଶ୍ୱଦରବାର ଓ ବିଶ୍ୱ-ସାହିତ୍ୟରେ ପ୍ରତିଷ୍ଠିତ ଓ ପ୍ରତିପାଦିତ କରିବାକୁ ଚେଷ୍ଟା କରିବା ଆମପରି ଅଧମଙ୍କ ପକ୍ଷରେ ପର୍ବତର ହିମାଳୟ ଆବେଦନ ପରି ଧୃଷ୍ଟତା ମାତ୍ର । ତାହା କରିବାକୁ ଗଲେ ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିରରେ ବାର ଶହ ବଢ଼େଇଙ୍କର ଅବିରାମ ନିହାଣ ଚାଳନା ପରି ଶହ ଶହ ସାହିତ୍ୟସାଧକଙ୍କର ଦିବାନିଶି ଲେଖନୀଚାଳନା ଆବଶ୍ୟକ ।

ଆଜିସୁଦ୍ଧା ବିଶ୍ୱକବିଙ୍କର ସମୁଦାୟ ଲେଖା ବିଶେଷତଃ ଗଦ୍ୟ-ସାହିତ୍ୟ ସଂଗୃହୀତ ଏବଂ ପ୍ରକାଶିତ ହୋଇପାରି ନାହିଁ । ଅବଶ୍ୟ 'ସମାଜ' ଅନୁଷ୍ଠାନ ଓ 'ଗୋପବନ୍ଧୁ ସାହିତ୍ୟ ମନ୍ଦିର' ଏଥିପ୍ରତି ସଜାଗ ରହିଥିବା ଆଶ୍ୱାସନାର କଥା । କବିଙ୍କର ସାହିତ୍ୟ ଉପରେ ବହୁ ବିଦ୍ୱାନଙ୍କର ବହୁମୂଲ୍ୟ ଆଲୋଚନା ତଥା ସମୀକ୍ଷାପ୍ରଭୃତି ବିଶେଷତଃ ଶ୍ରାଦ୍ଧବାର୍ଷିକୀ ବିଶେଷସଂଖ୍ୟା 'ସମାଜ'ରେ ରହିଅଛି । ସମୁଦାୟ ରଚନାକୁ ଏକ ଗ୍ରନ୍ଥାବଳୀରୂପେ ପ୍ରକାଶ କରାଇ ଗ୍ରନ୍ଥପ୍ରବେଶରେ ଉକ୍ତ ଆଲୋଚନା ଓ ସମୀକ୍ଷାପ୍ରଭୃତିକୁ ସଂଯୋଗ କରାଇ ପ୍ରକାଶ କରାଇବା ବିଶେଷ ଜରୁରୀ ମନେହୁଏ ।

ଏପର୍ଯ୍ୟନ୍ତ ବୋଧହୁଏ ବିଶ୍ୱକବି ଗୋପବନ୍ଧୁଙ୍କ ସାହିତ୍ୟର ଅନୁବାଦ ବିଭିନ୍ନ ଭାଷାରେ ପ୍ରକାଶିତ ହୋଇ ପାରି ନାହିଁ । ହିନ୍ଦୀ, ବଙ୍ଗଳା ଓ ଆସାମୀପ୍ରଭୃତି ଭାଷାରେ ଅନୁବାଦ ସହଜ ଏବଂ ସୁବୋଧ ହେବ । ତା'ପରେ ଧୀରେ ଧୀରେ ଏହା ଅନ୍ୟାନ୍ୟ ଭାରତୀୟ ଭାଷା ଏବଂ ଆନ୍ତର୍ଜାତିକ ଭାଷାମାନଙ୍କୁ ପ୍ରସାର ଲାଭ କରିବ । ଜାଗ୍ରତ ଭାରତର ଭାରତୀୟ ସାହିତ୍ୟଏକାଡେମୀ, ଓଡ଼ିଆ ସାହିତ୍ୟ ଏକାଡେମୀ-ବିଶ୍ୱଭାରତୀ ଏବଂ 'ସମାଜ' ଅନୁଷ୍ଠାନ ପ୍ରଭୃତି ଉଚ୍ଚାଙ୍ଗ ଅନୁଷ୍ଠାନମାନଙ୍କର ଦାୟିତ୍ୱ ବର୍ତ୍ତମାନ ସୁସ୍ପଷ୍ଟ । 'ସମାଜ' ଅନୁଷ୍ଠାନ ତଥା 'ଗୋପବନ୍ଧୁ ସାହିତ୍ୟ-ମନ୍ଦିର' ଏଥିରେ ନେତୃତ୍ୱ ନେଇ ଦିଗ୍‌ଦର୍ଶନ କରିବେ ବୋଲି ଆଶା କରିବା ନିତାନ୍ତ ସ୍ୱାଭାବିକ ।

, ବିଶ୍ୱକବି ଗୋପବନ୍ଧୁଙ୍କର ଲେଖାରେ କଅଣ ଏପରି ଅନ୍ତର୍ନିହିତ ଶକ୍ତି ଜଡ଼ିତ ଅଛି କେଜାଣି, ଲେଖାର ଉପସଂହାର କରିବାକୁ ଭାବିଲାକ୍ଷଣି

ଦୁଃଖ ଲାଗୁଛି, ପ୍ରାଣରେ ଆଘାତ ଆସୁଛି; ଜାତି, ଧର୍ମ, ବର୍ଣ୍ଣ, ଏବଂ ଦେଶ-କାଳ-ପାତ୍ରନିର୍ବିଶେଷରେ ହିନ୍ଦୁ, ମୁସଲମାନ, ଜୈନ, ବୌଦ୍ଧ, ଖ୍ରୀଷ୍ଟାନ-ପ୍ରଭୃତି ବିଶ୍ୱର ପ୍ରତ୍ୟେକ ଧର୍ମାବଲମ୍ବୀଙ୍କ ଉଦ୍ଦେଶ୍ୟରେ ରଚିତ ଏବଂ ମନ୍ଦିର, ମସ୍‌ଜିଦ୍, ଗୁରୁଦ୍ୱାର ଏବଂ ଚର୍ଚ୍ଚ ପ୍ରଭୃତି ପ୍ରତ୍ୟେକ ଧର୍ମାନୁଷ୍ଠାନରେ ଗୀତ ହୋଇପାରିବା ଭଳି ସାମ୍ୟ ଓ ମୈତ୍ରୀଭାବନାନ୍ୱିତ ବିଶ୍ୱକବିଙ୍କର କବିତାର ଧ୍ୱନି ଯେପରି ଆଜି ଜଳ, ସ୍ଥଳ ଓ ନଭୋମଣ୍ଡଳର ଅଣୁ, ପରମାଣୁରେ ପ୍ରତିଧ୍ୱନିତ ହୋଇ ଉଠୁଛି—

"ଦେଶ-କାଳ-ସୀମା-ଅତୀତ ମହିମା
ଅଗୋଚର ସୁର ନରେ,
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।
ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପଦରେ,
ପୂରୁ ତବ ଇଚ୍ଛା ଏ ନର-ପରାଣେ
ଜୟ ଜଗଦୀଶ ହରେ ।
ପ୍ରକାଶି କରୁଣା ସେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ
କର ତାହା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।
ମୋ ହୃଦୟ-ସ୍ୱାମୀ ପ୍ରଭୁ ଅନ୍ତର୍ଯାମୀ
ଦେଖାଇଛ ଯାହା ଥରେ,
ସେ ଅମୃତ ଗତି ଦିଅ ପ୍ରାଣପତି
ଜୟ ଜଗଦୀଶ ହରେ ।"

ଏ ପ୍ରାର୍ଥନା ଧର୍ମପଦର ନୁହେଁ—ଏ ପ୍ରାର୍ଥନା କବି ଗୋପବନ୍ଧୁଙ୍କର ନୁହେଁ—ଏ ପ୍ରାର୍ଥନା ସମଗ୍ର ବିଶ୍ୱବାସୀଙ୍କର । ଏହା ଏକ ଆନ୍ତର୍ଜାତିକ ପ୍ରାର୍ଥନା । କବି ଗୋପବନ୍ଧୁ ବାସ୍ତବରେ ହିଁ ବିଶ୍ୱର ପ୍ରତିନିଧି । ସେ ଯଥାର୍ଥରେ ବିଶ୍ୱକବି ।

ଆଜି ତାଙ୍କର ଶ୍ରାଦ୍ଧବାର୍ଷିକୀରେ ତିଳତର୍ପଣ କରିବା ସଙ୍ଗେ ସଙ୍ଗେ ପ୍ରାର୍ଥନା କରୁଛୁ କି 'ହେ ମହାତ୍ମା ! ମନରେ ସାହସ, ହୃଦୟରେ ଦମ୍ଭ ଏବଂ କର୍ମରେ ବିଶ୍ୱାସ ଦିଅ । ତୁମରି ଆଶିଷରେ ଆମ୍ଭେମାନେ ପଙ୍ଗୁ ହୋଇ ସୁଦ୍ଧା ହିମାଳୟ ଲଙ୍ଘନ କରିବାକୁ ସମର୍ଥ ହେବୁ ।

# ଗୋପବନ୍ଧୁ—ଏକ ଜାତୀୟ ଅଧ୍ୟାୟ

ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ

ରାଧାନାଥୋତ୍ତର ଯୁଗରେ ସତ୍ୟବାଦୀ ସାହିତ୍ୟ ନିର୍ମାତା ଗୋପବନ୍ଧୁଙ୍କୁ କେନ୍ଦ୍ରକରି ଏପରି ପ୍ରଶ୍ନ ଛାତ୍ରଜୀବନରୁ ମୋ ମନରେ ଜାଗରୁକ—ଏହା ଏକ ଯୁଗ ନା ଯୁଗାଭାସ ? ତିନି ଜଣ ସାହିତ୍ୟ ସାଧକ ଓ ଆଉ କେତେଜଣ ସମକାଳୀନ ସାହିତ୍ୟ ଉପାସକ ବିଂଶଶତାବ୍ଦୀର ୨ୟ ଦଶକରେ ଏ ଦେଶର ଜାତୀୟତାକୁ ଆଖିଆଗରେ ବଡ଼ ଭାବରେ ଧରି ଖଣ୍ଡିତ ସାହିତ୍ୟ ସାଧନା କରିଯାଇଛନ୍ତି । ଗୋପବନ୍ଧୁ ସେ ସବୁର ମୂଳଉତ୍ସ, ପ୍ରେରଣାଦାତା । କର୍ମର ଧୂଷର ବାଲିସ୍ତୂପରେ ସେ ଭିତର ସମସ୍ତ ପୀଡ଼ାକୁ ଆଦରରେ ଆପଣାର କରି ସେ ନିଜ କାବ୍ୟ କବିତାରେ ରାଧାନାଥ-ସୁଲଭ କଳାପ୍ରାଣତା ପ୍ରକାଶ କରିପାରି ନାହାନ୍ତି—ଏକଥା ମାନିବାକୁ ହେବ । ପୁନଶ୍ଚ ବ୍ୟାପକତା ଦୃଷ୍ଟିରୁ ସେ ଓଡ଼ିଆ ମଧ୍ୟଯୁଗୀୟ ବହୁ ସାହିତ୍ୟ ରଥୀଙ୍କ ସହିତ ତୁଳନୀୟ ମଧ୍ୟ ନୁହନ୍ତି—ଏକଥା ସ୍ୱୀକାର କରିବାକୁ ହେବ । ତଥାପି ତାଙ୍କ ଲେଖାର ସ୍ୱଳ୍ପତାକୁ ଚାହିଁ ସଂସ୍କୃତ କବିଙ୍କ ବାଣୀ "ସାରଂଚ ମିତଂଚ" କଥା ବିଚାର କଲେ ଗୋପବନ୍ଧୁ ସାହିତ୍ୟର ଅର୍ଥପୂର୍ଣ୍ଣ ଭାବୋଚ୍ଛ୍ୱାସ ପ୍ରତି ସମାଲୋଚନାର ଶ୍ରଦ୍ଧା ଜାଗ୍ରତ ହେବ—ଏଥିରେ ସନ୍ଦେହ ନାହିଁ । କବି ଗୋଲଡ଼ସ୍ମିଥ୍ ଯେପରି ଖଣ୍ଡିଏ କାବ୍ୟ, ଖଣ୍ଡିଏ ଉପନ୍ୟାସ ଓ ଖଣ୍ଡିଏ ନାଟକ ଲେଖି ବହୁ ପ୍ରଶଂସିତ ଓ ସାହିତ୍ୟ ଦରବାରରେ ସମାସୀନ ଗୋପବନ୍ଧୁ ସେହିପରି ସ୍ଥିର ଉଦ୍ଦେଶ୍ୟର ଅନୁବର୍ତ୍ତନରେ ନିଜ ଜୀବନ ଓ କର୍ମର ଅବସଞ୍ଚିତ୍ୱ ନିଜ ସାହିତ୍ୟରେ ପ୍ରକଟିତ କରି ଆମ ଆଗରେ ଏକ ଜାତୀୟ ଯୁଗର ସ୍ମରଣ ହିସାବରେ ସମ୍ମାନିତ ।

ସତ୍ୟବାଦୀଯୁଗ ଜାତୀୟତାର ଯୁଗ । ଏହାର ଠିକ୍ ପୂର୍ବରୁ ଭାରତର ଚତୁର୍ଦ୍ଦିଗରେ ଏ ଦେଶର ମୌଳିକତାକୁ ସଂରକ୍ଷିତ କରିବା ପାଇଁ ଧର୍ମ ରାଜନୀତି ଓ ସମାଜ ସବୁକ୍ଷେତ୍ରରେ ଜାତୀୟତାର ଉତ୍ସ ଦେଖା ଦେଇଥିଲା । ଏପରିକି ଖ୍ରୀଷ୍ଟିୟାନ ଧର୍ମ ବିରୁଦ୍ଧରେ 'ବ୍ରାହ୍ମଧର୍ମ'ର ପ୍ରତିଷ୍ଠାରେ

ଏହି ଜାତୀୟତା ଲକ୍ଷ୍ୟ କରାଯାଇପାରେ । ପୁନଶ୍ଚ ସନାତନ ହିନ୍ଦୁଧର୍ମର ସଂରକ୍ଷଣପାଇଁ ଓ ଏହାର ଉଦାର ବିଶ୍ୱଜନୀନ ଭାବଧାରାକୁ ପ୍ରଚାର କରିବା ପାଇଁ ଏହି ସମୟରେ ଭାରତୀୟ ଜନଗଣମାନସରେ ଏକ ସଜ୍ଞାନ ସଚେତନତା ସୃଷ୍ଟି ଉପଲବ୍ଧି ହୋଇଥିଲା । ପଣ୍ଡିଚେରୀରେ ଅରବିନ୍ଦ ଆଶ୍ରମ, ହିନ୍ଦୁ ମହାସଭା, ଶାନ୍ତି ନିକେତନ, ପଞ୍ଜାବର 'ଆର୍ଯ୍ୟ ସମାଜ', ଉତ୍ତର ପ୍ରଦେଶର ସ୍ୱାମୀ ଶିବାନନ୍ଦ ସରସ୍ୱତୀ ପୀଠ ହିନ୍ଦୁଧର୍ମର ସଂରକ୍ଷଣ ପାଇଁ ଗଢ଼ି ଉଠିଲା । ହିନ୍ଦୁଧର୍ମର ମହତ୍ତ୍ୱ ପ୍ରଚାରପାଇଁ ବିବେକାନନ୍ଦ ଓ ରାମକୃଷ୍ଣ ପରମହଂସ ଆଦି ମହାପୁରୁଷମାନେ ଲାଗିପଡ଼ି ଥିଲେ ଓ ଏହାର ଆଧ୍ୟାତ୍ମିକ ଦିଗପ୍ରତି ଜଗତର ଦୃଷ୍ଟି ଆକର୍ଷଣ କରିଥିଲେ । ଏପରିକି ମାଡ଼ାମ୍ ବ୍ଲାଭାଟ୍‌ସ୍କିଙ୍କ ପରି ଜଣେ ଋଷିୟାନ୍ ମହିଳା ଏ ଦେଶକୁ ଆସି ଏ ଧର୍ମର ମହିମା ପ୍ରତିଷ୍ଠାପାଇଁ ଆତ୍ମନିୟୋଗ କରିଥିଲେ । ପାଦ୍ରୀଧର୍ମ ପ୍ରଚାର ବିରୁଦ୍ଧରେ ଏହା ହିନ୍ଦୁଧର୍ମର ବିରାଟ ଆତ୍ମରକ୍ଷାର ଉଦ୍ୟମ ମାତ୍ର । ସତ୍ୟବାଦୀର ସାହିତ୍ୟ ସାମନାରେ ଏହି ଉଦାରଭାବ ବିମୂର୍ତ୍ତି ହୋଇଥିଲା ।

"ନିଜ ସ୍ୱାର୍ଥପାଇଁ ଜାତିକୁଦେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତିରକ୍ତ ବିନ୍ଦୁ"

ଏହାହିଁ ଗୋପବନ୍ଧୁଙ୍କ ଧର୍ମ ଦର୍ଶନ ଥିଲା । କର୍ମଶୀଳତା ସହିତ ଭାବନିଷ୍ଠତାର ସମନ୍ୱୟ କଷ୍ଟକର । କିନ୍ତୁ ଏ ଉଭୟର ବିପୁଳ ସମନ୍ୱୟ ଗୋପବନ୍ଧୁଙ୍କଠାରେ ସମ୍ଭବ ହୋଇଥିଲା । ତାଙ୍କ ସାହିତ୍ୟରେ କର୍ମନିଷ୍ଠ ଜାତୀୟତା ଓ ଉଦାର ଗଣତାନ୍ତ୍ରିକ ସ୍ୱର ଉଦାତ୍ତ ହୋଇ କର୍ମମୁଖରତା, ସଂଗ୍ରାମ ଶୀଳତାର ବାର୍ତ୍ତା ପ୍ରଚାର କଲା । ଗୋପବନ୍ଧୁଙ୍କ ପୂର୍ବରୁ ରାଧାନାଥଙ୍କ ସାହିତ୍ୟରେ ଉତ୍କଳୀୟତାର ପ୍ରକାଶ ବହୁ ଭାବରେ ଦେଖାଦେଇଥିଲେ ମଧ୍ୟ ଗୋପବନ୍ଧୁଙ୍କ ପରି ସେ ସାହିତ୍ୟ ଓଡ଼ିଶାର ଦୁର୍ଗତିର ସମସ୍ତ ସ୍ତର ଭେଦ କରିବାରେ ସମର୍ଥ ହୋଇ ପାରିନଥିଲା । ଆର୍ଥନୀତିକ, ଶିକ୍ଷାଗତ ଓ ସାମାଜିକ ଦୁର୍ଗତିର ନିରାକରଣପାଇଁ ଫକୀରମୋହନ, ମଧୁବାବୁ ଓ ଗୋପବନ୍ଧୁହିଁ ବଳିଷ୍ଠ ଦିଗ୍‌ଦର୍ଶନ ଦେଇଥିଲେ । ତେଣୁ ରାଧାନାଥ କେବଳ କାବ୍ୟର ବିବିଧବର୍ଣ୍ଣରେ ସୌନ୍ଦର୍ଯ୍ୟର ଉପାସନା ଭିତରେ ରହିଗଲେ । କିନ୍ତୁ ସତ୍ୟବାଦୀ ଯୁଗର କବିମାନେ କର୍ମର କବିରୂପେ ଆତ୍ମପ୍ରକାଶ କଲେ । ରାଧାନାଥ ଭାବର କବିଥିଲେ, ଫକୀରମୋହନ ବ୍ୟକ୍ତି ଓ ସମାଜ ଭିତରକୁ ପ୍ରବେଶ କରିବାକୁ ପ୍ରୟାସ କରିଥିଲେ ଏବଂ ସାଧାରଣ ଜୀବନର ଅତି

ଦୁରବସ୍ଥାର ନଗ୍ନଚିତ୍ର ପ୍ରକାଶ କରିପାରିଥିଲେ । କିନ୍ତୁ ସତ୍ୟବାଦୀର ବନ ବିଦ୍ୟାଳୟ ଗୋପବନ୍ଧୁଙ୍କ ନେତୃତ୍ୱରେ ବହୁମୁଖୀ ଜାତୀୟ କାର୍ଯ୍ୟକ୍ରମକୁ ନେଇ ପ୍ରତିଷ୍ଠିତ ହେଲା । ସମାଜ ସଂସ୍କାର, ଦେଶ ସେବା, ପୂର୍ଣ୍ଣାଙ୍ଗ ଉତ୍କଳ ପ୍ରଦେଶ ଗଠନ, ଲୋକଚେତନା ସୃଷ୍ଟି ଆଦି ଦିଗରେ ଏ ସାହିତ୍ୟ କେବଳ କବି ପ୍ରାଣତାର ପ୍ରତିଫଳନ ଭାବରେ ବିକାଶ ଲାଭ କରିଥିଲା । ଭାବଜୀବୀ କବି ରାଧାନାଥ ସଂସାର ବିମୁଖ ନିସଙ୍ଗ ଜୀବନ ଯାପନ ନିମନ୍ତେ ଚିଲିକା ତୀରରେ ପଶ୍ଚିମ-ଜୀବନ କଟାଇବା ପାଇଁ ଆକାଂକ୍ଷା ପ୍ରକାଶ କଲାବେଳେ ଏ ସାହିତ୍ୟର ଭାବସ୍ରଷ୍ଟା କବି ଗୋପବନ୍ଧୁ ନିଜକୁ ଓଡ଼ିଶାର ଧୂଳିମଳିନ ଜୀବନ ଭିତରେ ପରୀକ୍ଷା କରିନେଲେ । ତାହାର ପ୍ରତିଧ୍ୱନି—

"ସ୍ୱାଧୀନତା ପଥେ ଅଛି ଯେତେଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼
ମିଶୁମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚଢ଼ି ଯାଆନ୍ତୁ ପିଠିରେ"

ଏଇଠାରେ କେହି କେହି ସମାଲୋଚକ ହୁଏତ ମତ ଦିଅନ୍ତିଯେ ଗୋପବନ୍ଧୁ କେବଳ ଆଦର୍ଶର ପରିପ୍ରକାଶ ପାଇଁ ଓଡ଼ିଶାର ଦୁଃଖ ଓ ତା'ର କାରଣ ଖୋଜି ବୃହତ୍ତର ମାନବ ଜୀବନର ଚିତ୍ର ଅଙ୍କନ କରି ପାରିନାହାନ୍ତି । ଗୋପବନ୍ଧୁଙ୍କ ଧର୍ମପଦ ଆଦର୍ଶ ପୀଠରେ ଆତ୍ମବଳୀ ଦେଇଛି କିନ୍ତୁ ମନୁଷ୍ୟପରି ସାର୍ଥକ ଜୀବନ ଯାପନ କରିପାରିନାହିଁ । ଏପରି କି ଗୋଦାବରୀଶଙ୍କ ଗାଥା କବିତା ଓ ନୀଳକଣ୍ଠଙ୍କ 'ମାୟାଦେବୀ' ସବୁଠି ଏହି ଆଦର୍ଶ ଓ ସଫିଷ୍ଟିକେଶନର ଚିତ୍ର ଏ ଯୁଗ ସାହିତ୍ୟରେ ବିମୂର୍ତ୍ତ । ଫଳରେ ଏ ସାହିତ୍ୟ ବିଶ୍ୱମୁଖୀ ହୋଇ ପାରିନାହିଁ, ଚିରନ୍ତନତାରେ ଉନ୍ନୀତ ନୁହେଁ ।

କିନ୍ତୁ ଭାରତ ପରି ଏକ ସମସ୍ୟାବହୁଳ ଦେଶରେ ଏପରି ସାହିତ୍ୟ ବହୁତ ଲେଖା ହୋଇଛି । ରାଶି ରାଶି ପ୍ରେମ କାହାଣୀ ପାରସ୍ୟ ଓ ଆରବ ଦେଶର ଉପକଥା ପରି ଏଠାରେ ମଧ୍ୟ ପ୍ରଚୁରିତ । ସେଥିରେ ଏ ଦେଶର ଅଗଣିତ ଦୀନଦରିଦ୍ର ଜନତାର କି ଲାଭ ହୋଇଛି ? ପଙ୍ଗୁ, ଅଶକ୍ତ ପ୍ରାଣରେ କେଉଁଠି ବଞ୍ଚିବାର ଓ ଜୀବନକୁ ଭଲ ପାଇବାର ବିପୁଳ ପ୍ରୟାସ ସୃଷ୍ଟି ହୋଇଛି ? ସତ୍ୟବାଦୀ ସାହିତ୍ୟର ସ୍ୱରସ୍ରଷ୍ଟା କବି ଗୋପବନ୍ଧୁଙ୍କ ଆତ୍ମ-ବାଣୀଥିଲା—"ଏକ ଉଦ୍ଦେଶ୍ୟ ପାଇଁ ବଞ୍ଚିବା ଓ ତହିଁପାଇଁ ଜୀବନ ମଧ୍ୟ ଦେବା ।" ସାହିତ୍ୟ ଯଦି ସମାଜ ବିକାଶର ଚିତ୍ର ଧରି ରଖିଥାଏ ତେବେ

ଏକ ଉତ୍କଟ ନନ୍ଦତ ଜୀବନ କଟାଇ ସ୍ୱାଧୀନତାପାଇଁ ଆପ୍ରାଣ ଆନ୍ଦୋଳନ କରୁଥିବା ଏକ ଜାତି କାନରେ ବିଂଶ ଶତାବ୍ଦୀରେ କ'ଣ ସହଜ ପ୍ରଣୟର ବାଣୀ ଶୁଣାଇ ଦିଆଯାଇ ପାରିଥାନ୍ତା ? ଏପରିଯୁଗ ଅସଚେତନ ସାହିତ୍ୟ କେଉଁ ସାମାଜିକ ବ୍ରତ ବା ସାଧନା କରିପାରିଥାନ୍ତା ? ସେ "ସୁନ୍ଦରେ ତୃପ୍ତିର ଅବସାନ ନାହିଁ" କେତେଜଣଙ୍କୁ ବାଞ୍ଛିବାର ବିପୁଳ ବିଶ୍ୱାସ ଦେଇ ପାରିଥା'ନ୍ତା ? ସାହିତ୍ୟକୁ ପ୍ୟୁରିଟାନ୍ ଦୃଷ୍ଟିଭଙ୍ଗୀରେ ଦେଖିବାର ଯୁଗ ଆଜି ଅନ୍ତର୍ହିତ । ପୁଣି ସମାଜର ଗୃହିଦା, ଲୋକମାନଙ୍କ ଜୀବନ-ଯାପନର ଭଙ୍ଗୀ ସେହି ଭାବରେ ବଦଳି ଯାଇଛି ମଧ୍ୟ । ଅଥଚ ଆମେ ଏକ ପୁରୁଣା ସମାଲୋଚନାର ପଦ୍ଧତିରେ ସାହିତ୍ୟକୁ ବିଚାର କରି ବସୁଛେ । ତଥାପି ସମାଜ ଅଭିମୁଖୀ ରୁଷିଆର ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବହୁ ସାହିତ୍ୟକୁ ରେକମେଣ୍ଡେଡ଼ ଲିଟରେଚର କହି ଦୂରେଇ ରଖୁଛେ । ଆଧୁନିକତା ନାମରେ ପୁଣି ସେହି ଅଷ୍ଟାଦଶ ଶତାବ୍ଦୀର ବିରହ-ମିଳନ ଶବ୍ଦ ଓ କପୋଳକଳ୍ପନା ଭିତରେ ସାହିତ୍ୟକୁ ମାଜି ବସୁଛେ । ପୁଣି ଏଣେ ସ୍ୱୀକାର କରୁଛେ **Matthew Arnold** ଙ୍କୁ ଓ ସ୍ୱୀକାର କରୁଛେ ତାଙ୍କ ଉକ୍ତି—**"Poetry is the true criticism of life"** । ଏହା ଆପାତଃ ବିରୋଧୀ ହେଉନାହିଁ କି ?

ଏହି ଦୃଷ୍ଟିରୁ ବିଚାର କଲେ ଗୋପବନ୍ଧୁ କୃତ 'କାରାକବିତା'-ଠାରୁ 'ଧର୍ମପଦ', 'ନଚିକେତା ଉପାଖ୍ୟାନ' ପର୍ଯ୍ୟନ୍ତ ସମସ୍ତ କାବ୍ୟ ଓ ଖଣ୍ଡ କବିତାରେ ଜାତି ପ୍ରାଣତା ଓ ଉଦ୍ଦେଶ୍ୟ ମୁଖୀନତାର ବ୍ୟାପକ ଶବ୍ଦ କେଉଁଠାରେ ଖଣ୍ଡିତ ହୋଇନାହିଁ । ଶିକ୍ଷା ନୀତିରେ, ସାହିତ୍ୟରେ, ବସନ ଭୂଷଣରେ, ସମାଜ ସଂଗଠନରେ ସତ୍ୟବାଦୀ ଏକ ନୂତନ ଆଦର୍ଶ ପରୀକ୍ଷାର କେନ୍ଦ୍ର । ଏମାନଙ୍କ ଜାତୀୟ ଚିନ୍ତାଧାରା କେବଳ ଆଞ୍ଚଳିକ ପ୍ରୀତି ଓ ଭୂଖଣ୍ଡର ଜଡ଼ ପିଣ୍ଡରେ ଆବଦ୍ଧ ନ ରହି ଉଦାର, ମହତ, ସାର୍ବଜନୀନ ମାନବିକ ଆଦର୍ଶର ପୋଷକତା କରିପାରିଛି । ତେଣୁ ଗୋପବନ୍ଧୁ ସତ୍ୟର ଯଥାର୍ଥ ସନ୍ଧାନୀ ଭାବରେ ଜନସାଧାରଣଙ୍କ ସେବା, ନିଖିଳର କଲ୍ୟାଣରେ ନିଜ ସାହିତ୍ୟକୁ ନିୟୋଜିତ କରିଛନ୍ତି । ବାହାରର ସୌନ୍ଦର୍ଯ୍ୟ ବାହାରର ଆକୃତି ଉପରେ ନିର୍ଭରଶୀଳ, କିନ୍ତୁ ସତ୍ୟ ଅନ୍ତରର ଉପାଦାନ ଉପରେ ନିର୍ଭରଶୀଳ । ସୌନ୍ଦର୍ଯ୍ୟ ଇନ୍ଦ୍ରିୟ ଗ୍ରାହ୍ୟ, ସତ୍ୟ କିନ୍ତୁ ଆତ୍ମାକୁ ସ୍ପର୍ଶ କରେ । ତେଣୁ ଆତ୍ମଶୁଦ୍ଧି, ସେବା ଓ ସତ୍ୟର ସାଧନାରେ

ସତ୍ୟବାଦୀ ଯୁଗର ସମସ୍ତ ଶକ୍ତି ନିପ୍ରୋଜିତ । ଅନ୍ତରର ପ୍ରେମ ସନ୍ଧାନରେ ଏ ସାହିତ୍ୟ ବିଶ୍ୱମୁଖୀ—

ପ୍ରେମ ଭାବେ ଯାର ଅନ୍ତର ପୂରିତ
ସର୍ବପ୍ରାଣୀ ହୃଦ ତା' ହୃଦେ ଅଙ୍କିତ ।
ସର୍ବ ଅନୁଭୂତି ସର୍ବଭୂତେ ତାର
ତା' ଆଖିରେ ବିଶ୍ୱ ଏକ ପରିବାର ।
ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହୁ,
ଅନ୍ୟ ହୋଇ ତା'ର ନାହିଁ ଆଉ କେହି ॥

ରାଜନୀତି ଭାବର ପରିପ୍ରେକ୍ଷୀରେ ସତ୍ୟବାଦୀ ଗୋଷ୍ଠୀ ସାହିତ୍ୟିକଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ସେହି ଭାବରେ ପରିଚାଳିତ ହୋଇ ସେମାନେ ଅନେକ ସମୟରେ ସାହିତ୍ୟିକ କଳାପ୍ରତି ବିଶ୍ୱସ୍ତ ହୋଇ ପାରୁନଥିଲେ । ସରଳ ଭାଷା ଓ ସହଜ ସ୍ୱତଃସ୍ଫୂର୍ତ୍ତ ପ୍ରକାଶଭଙ୍ଗୀ ମଧ୍ୟରେ ନିଜ ସଂଗ୍ରାମୀ ଜୀବନର ଅନୁଭୂତି ବର୍ଣ୍ଣନା କରି ନୂଆ ଆଦର୍ଶରେ ନିଜ ଦେଶବାସୀଙ୍କୁ ଅନୁପ୍ରାଣିତ କରିବା ଗୋପବନ୍ଧୁଙ୍କ କାବ୍ୟ ସାଧନାର ଭୂମିକା ଥିଲା । ସ୍ୱବ୍ୟକ୍ତିତ୍ୱ ଓ ସଂଗ୍ରାମ ସାଧନା ପୁଷ୍ଟ ଜୀବନ ଏମାନଙ୍କ କାବ୍ୟଠାରୁ ବହୁଗୁଣରେ ଗରୀୟାନ । ମହାନ ଜୀବନର ଆଂଶିକ ଆତ୍ମଲିପି ଭାବରେ ଏମାନଙ୍କ କାବ୍ୟର ସାର୍ଥକତା । ତେଣୁ ଏମାନଙ୍କ ବ୍ୟକ୍ତିତ୍ୱ, ଆଦର୍ଶ, ନିଷ୍ଠା ଓ ଅତ୍ମୋତ୍ସର୍ଗର କାହାଣୀରେ ଉଦ୍‌ବୁଦ୍ଧ ନ ହେଲେ ଏମାନଙ୍କ କାବ୍ୟର ଜାତୀୟ ସ୍ୱରସମ୍ପଦ ଉପଭୋଗ୍ୟ ହୁଏନାହିଁ । 'ଚିଲିକା' ଜଣେ ଅନାମଧେୟ କବିଙ୍କ ରଚନା ହୋଇଥିଲେ ଏହାର ଗୁରୁତ୍ୱ ହାନି ହୁଅନ୍ତା ନାହିଁ, କିନ୍ତୁ 'ଧର୍ମପଦ' ଗୋପବନ୍ଧୁଙ୍କ ଲେଖନୀ ପ୍ରସୂତ ନହୋଇ-ଥିଲେ କାହାର ଦୃଷ୍ଟି ଆକର୍ଷଣ କରି ନଥାନ୍ତା । କିନ୍ତୁ ରାଧାନାଥ ସାହିତ୍ୟ ମୂକ ଜନତାର ଭାଷା ଫୁଟାଇବା ପାଇଁ ଅସମର୍ଥ । ସହରୀ ସଭ୍ୟତାର ଅଭିଜାତ ଘେରି ବାତାବରଣ ପରି ସେ ସାହିତ୍ୟ କେବଳ ଅଭିଜାତ ଗୋଷ୍ଠୀ ମଧ୍ୟରେ ଆଲୋଡ଼ନ ଆଣିପାରେ । କିନ୍ତୁ ଲୌକିକ ସ୍ତରରେ ତାର ପ୍ରଶସ୍ତି ଓ ଆଦର କାହିଁ ? ନିଜ ରଚନାକୁ ଲୌକିକ ସ୍ତରକୁ ଆଣିବା ଗୋପବନ୍ଧୁଙ୍କ ଲକ୍ଷ୍ୟ ଥିଲା ଓ ସେ ଲକ୍ଷ୍ୟ ସତ୍ୟବାଦୀ ସାହିତ୍ୟ ଆଦର୍ଶର ମୂଳ କଥା ଭାବରେ ପ୍ରମାଣିତ । ଗୋପବନ୍ଧୁଙ୍କ ମତରେ "ସମାଜର କେତେକ ଉଚ୍ଚ ଶ୍ରେଣୀର ଲୋକେ ସମଗ୍ର ଜାତି ହୋଇଥିଲେ

ଲୌକିକ ସାହିତ୍ୟର ପ୍ରୟୋଜନ ହୁଅନ୍ତା ନାହିଁ । ମାତ୍ର ଯେଉଁମାନେ ବିଲରେ ହଳ କରୁଛନ୍ତି, ବଗିଚାରେ ପାଣି ଦେଉଛନ୍ତି, ଜଙ୍ଗଲରେ କାଠ କାଟୁଛନ୍ତି, ତନ୍ତ ଶାଳରେ ଲୁଗା ବୁଣୁଛନ୍ତି, ସେ ଶ୍ରେଣୀର ଜନସାଧାରଣ ଜାତିର ଗଣ୍ଡି । ଉଚ୍ଚ ଶ୍ରେଣୀର କେତେକ ଲୋକ ଜାତିର ମସ୍ତକ ହୋଇଥାନ୍ତି । ମାତ୍ର ଜନସାଧାରଣଙ୍କ ମନରେ ଜାତିର ହୃଦୟ ଓ ଆତ୍ମାର ସ୍ଥାନ । ସେମାନଙ୍କ ପ୍ରାଣରେ ସୌନ୍ଦର୍ଯ୍ୟ ଗ୍ରହଣ ପିପାସା ଅଛି । ଆହ୍ଲାଦ, ଆମୋଦର ପ୍ରବୃତ୍ତି ଅଛି, ଉନ୍ନତିର ଆକାଂକ୍ଷା ମଧ୍ୟ ଅଛି । ଏହି ଆକାଂକ୍ଷା ଓ ପ୍ରବୃତ୍ତି ସକଳର ତୃପ୍ତି ନିମନ୍ତେ ସେମାନେ ସାହିତ୍ୟ ଲୋଡ଼ନ୍ତି । ଉପଯୋଗୀ ସାହିତ୍ୟ ନ ପାଇଲେ ସେମାନଙ୍କ ହୃଦୟର ଭାବ ସକଳ ମରିଯିବ; ନ ହେଲେ ବିପଥରେ ଚାଲିବେ ।''

ସାଧାରଣ ଜନତାପାଇଁ କୌଣସି କବି ଏପରି କେବେ ଭାବି-ଅଛନ୍ତି କି ? ଜାତିର ପ୍ରାଣ ଓ ହୃଦୟ ଭିତରେ ନିଜକୁ ଏକାକାର କରି ମିଶାଇ କୌଣସି କବି ଏପରି ଆପଣାକୁ ଆବିଷ୍କାର କରି ଅଛନ୍ତି କି ? ଜାତିକୁ ଠିକଣା ବାଟ ଦେଖେଇବାପାଇଁ ଏହି ଜୀବନର ସାହିତ୍ୟ-ସାଧନା ଅଭିପ୍ରେତ ଥିଲା । ତେଣୁ ରଚନାରୀତି ପ୍ରତି ଦୃଷ୍ଟି ନଦେଇ ଗୋପବନ୍ଧୁ ନିଜ କାବ୍ୟିକ-ଶୈଳୀକୁ ନିରୁପମ ସରଳତାରେ ଆବୃତ୍ତ କରିଛନ୍ତି । ପ୍ରଚାରଧର୍ମିତା ଓ ଉଦ୍ଦେଶ୍ୟମୂଳକତା ଭାଷାର ସ୍ୱଚ୍ଛ ପ୍ରବାହଭିତରେ ଅବଲୁପ୍ତ । ଗୋପବନ୍ଧୁଙ୍କ କାରାକବିତା' ଓ 'ବନ୍ଦୀର ସ୍ୱଦେଶଚିନ୍ତା' ଏହି ଦୃଷ୍ଟିରୁ ଦୁଇଟି ବରିଷ୍ଠ ଜାତୀୟ ମହାକାବ୍ୟ । ଗଭୀର ରହସ୍ୟର ସଙ୍କେତ, ବିଭିନ୍ନ ଛନ୍ଦ ଓ ରୂପକଳ୍ପର ପ୍ରୟୋଗ ତଥା ସୂକ୍ଷ୍ମ ରଚନାତ୍ମକ ଅଭିବ୍ୟଞ୍ଜନାରେ ଏ କାବ୍ୟ ସମୃଦ୍ଧ ନ ହେଲେ ମଧ୍ୟ ଅନୁଭୂତିର ନିଷ୍ଠା ଓ ସରଳତାରେ, ଜାତିପାଇଁ ପ୍ରାଣଭରା କାରୁଣ୍ୟରେ ଏ କାବ୍ୟର ଜାତୀୟ-ମୂଲ୍ୟ କେବେ ଖର୍ବିତ ହେବ ନାହିଁ । ମହାନ୍ ଜୀବନ ଓ ଜାତିପ୍ରାଣତାର ପ୍ରସୂତିପୀଠଭାବରେ ଏ ସାହିତ୍ୟ ପ୍ରତିଭାତ । ରାଧାନାଥଙ୍କ ଲେଖା ପଢ଼ି ଜୀବନଯାପନର ଆଦର୍ଶ ସ୍ଥିର କରିବା କଷ୍ଟକର; କିନ୍ତୁ କାବ୍ୟ-କବିତାକୁ ଗୋପବନ୍ଧୁ ଜନତାର ସେବିକାଭାବରେ ଗ୍ରହଣ କରି ହେତୁ ଓ ଯୁକ୍ତିବାଦ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ତାହାହିଁ ଜାତି-ଚେତନାର କଲ୍ୟାଣକାମୀ ଭୂମିକା ।

ସେଥିପାଇଁ ଗୋପବନ୍ଧୁ ସାହିତ୍ୟରେ ଏ ଜାତିର ଗୌରବମୟ ଐତିହ୍ୟ ଓ ପରଂପରାପ୍ରତି ପୂର୍ବାଦୃଷ୍ଟି ସ୍ପଷ୍ଟ । ପ୍ରାଚୀନ ଗୌରବର ପୁନଃପ୍ରତିଷ୍ଠା, ପ୍ରାଚୀନ କଳା ଓ ସ୍ଥାପତ୍ୟର ଉଦ୍ଧାର, ପ୍ରାଚୀନ ପରମ୍ପରାର ପୁନରୁତ୍‌ଥାନ, ନୈତିକତା ଓ ଆର୍ଯ୍ୟ ଜୀବନଧାରାରେ ଆଧୁନିକ ଜୀବନର ପୁନର୍ଗଠନ ଏ ସାହିତ୍ୟର ପ୍ରାଣବାଣୀ । ନୀଳକଣ୍ଠଙ୍କ ଭାଷାରେ—"ଏହି ଉଦ୍‌ବୋଧ ମୂଳରେ ଥିଲା ସ୍ୱାଧୀନତା-ସଂଗ୍ରାମର ଦ୍ୟୋତକ ସ୍ପଷ୍ଟଭାରତୀୟ ଜାଗରଣ; ଅନ୍ୟଥା ଏହା ପ୍ରାଣ ପ୍ରାଚୂର୍ଯ୍ୟ ଉପରେ ପ୍ରତିଷ୍ଠିତ ଥିଲେ ମଧ୍ୟ ଆମର ସବୁ ଥିଲା; ଆମ କବି, ଆମ ଲେଖକ ବଡ଼; ଇଂରେଜମାନେ ନଷ୍ଟ କରି ଦେଇଥିବା ଆମ ଶିଳ୍ପର ଆଜ କାହାରି ନ ଥିଲାପ୍ରଭୃତି ଭାବ ଏଥିରେ ପୂରି ରହିଥିଲା । ତେଣୁ ଇତିହାସକୁ ସତ୍ୟ ଦୃଷ୍ଟିରେ ଦେଖିବା ଅପେକ୍ଷା ଭାବଦୃଷ୍ଟିରେ ଦେଖିବା ପ୍ରୟାସ ଏହି ଯୁଗରେ ହେବା ସ୍ୱାଭାବିକ ।" ତଥାପି ଏମାନଙ୍କ ଦୃଷ୍ଟିଭଙ୍ଗୀ ରୋମାଣ୍ଟିକ୍ ନୁହେଁ, ଆଦର୍ଶବାଦୀ । ତେଣୁ ରାଧାନାଥଙ୍କ କାବ୍ୟର ଐତିହାସିକପରମ୍ପରା ବିରୋଧୀ ଭାବର ଏମାନେ ପ୍ରତ୍ୟକ୍ଷ ବିରୋଧ କରି ଥିଲେ । ନୀଳକଣ୍ଠଙ୍କ କବିତାରେ ତା'ରି ପ୍ରତିଫଳନ ସ୍ପଷ୍ଟହେଲା ।

"ଘର ଛାଡ଼ି କମ୍ପା ଯିବସେ ରାଜବାଳା ନନ୍ଦିକା
ସହକାର-ଦ୍ରୁମଗହଳେ ଭେଦି କ୍ଷୀଣ ଚନ୍ଦ୍ରିକା
କଉଶଲଗଙ୍ଗ ଧଉଳୀ ଏହି ନୟନେ ନାଚେ
କବିଙ୍କି ସୁମରି ବିରାଗେ ମୁଖ ଫେରାଅ ପଛେ ।"

ରାଧାନାଥ ନନ୍ଦିକାର ଭାରୁ ନାଲିଭ ପ୍ରତି ଯେତେ ସମମର୍ମିତା ପ୍ରକାଶ କରି ରୂପର ଅନୁପମ ସୃଷ୍ଟିଭାବରେ ତାକୁ ଗଢ଼ିଥିଲେ ମଧ୍ୟ ସେ ସୌନ୍ଦର୍ଯ୍ୟର ସତ୍ୟରେ ସତ୍ୟବାଦୀ ପରମ୍ପରା ଆଲୁଳିତ ହୋଇ ନାହିଁ । ତେଣୁ ଧର୍ମପଦର ଆତ୍ମତ୍ୟାଗଜନିତ ବିପୁଳ ଖ୍ୟାତି ପ୍ରତି ଓ ମାନବ-ସମାଜପାଇଁ ଏହି ତ୍ୟାଗର ଜାଗତିକ ମୂଲ୍ୟବୋଧ ପ୍ରତି କବି ଗୋପବନ୍ଧୁ ଅଧିକ ଆସକ୍ତ । ସତ୍ୟହିଁ ତାଙ୍କପାଇଁ ସବୁଠାରୁ ବଳ ବଡ଼ ସୁନ୍ଦର ବସ୍ତୁ । ସେଥିପାଇଁ ଏ ସାହିତ୍ୟର ଦରବାରରେ ମାଟିଗୋଡ଼-ପଥର ଢିମାଠାରୁ ଧର୍ମପଦ ପର୍ଯ୍ୟନ୍ତ ସମସ୍ତେ ଏକ ପବିତ୍ର ପରମ୍ପରାର ଶୋଭାଯାତ୍ରାରେ ନିଜ ଯାତ୍ରା ରଥକୁ ମିଶାଇ ଦେଇଛନ୍ତି ।

ପୁଣି ଗୋପବନ୍ଧୁଙ୍କ ଧର୍ମ-ଧାରଣା ମହାଭାରତୀୟ ଭାବଧାରାରେ ଉଦ୍‌ବେଳ । ଏଥିରେ ସାମାଜିକ ତଥା ଜାତୀୟ ଗଠନମୂଳକତା ଅତିସ୍ପଷ୍ଟ । "ବ୍ରାହ୍ମଣସମିତି ଗ୍ରୀଷ୍ମାବାସରେ ସମବେତ ବ୍ରାହ୍ମଣଗ୍ରାମଙ୍କ ପ୍ରତି" ତାଙ୍କର ଉଦ୍‌ବୋଧନ ଏ ସାହିତ୍ୟପାଇଁ ଏକ ଜାତୀୟ ସମ୍ପତ୍ତି ।

"ଭାରତ-ଅର୍ଣ୍ଣବେ କି ଘୋର ତୋଫାନ
ଦେଖି ଭାଇ ଆଗୁଁ ହୁଅ ସାବଧାନ
× × × ଭାରତ ଜାତୀୟ ଜୀବନ-ତରଣୀ
ପାଏ ନାହିଁ ଏବେ ସହଜ ସରଣୀ ।
ଜାତୀୟତା-ପୋତେ ଜୀବନ-ବୋଇତ
ଯୋଡ଼ିବା ତ ପ୍ରତିଜନର ବିହିତ ।
× × × ଭାରତ ବାସୀର ଧର୍ମବଳ ସାର
ଧର୍ମବିନା ଆଜି ଏତେ ହାହାକାର ।
ଢାଳ ସ୍ୱାର୍ଥବଳି ଦେଖାଅ ସେ ତ୍ୟାଗ,
ଭାରତଜାତୀୟ ମହାଯାଗେ ଲାଗ ।
× × × ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ,
ସାଧ ବିଶ୍ୱହିତ ତେଜି ଅଭିମାନ ।

ପୁଣି ସ୍ୱଦେଶ-ପ୍ରୀତିମାଧ୍ୟମରେ ବିଶ୍ୱପ୍ରୀତିର ବିଶ୍ୱାସ ଏଥିରେ ପ୍ରକଟିତ । ତାଙ୍କ ମତରେ—"ଜନ୍ମଭୂମିର ଉନ୍ନତିରେ ଯଥାସମ୍ଭବ ଆତ୍ମନିଯୋଗ କରିପାରିଲେ—ବିଶ୍ୱସେବା କରୁଁ ବୋଲି ମନେକରି ଆଶ୍ୱସ୍ତ ହେବୁ ।...ତେଣୁ ଆମ୍ଭେମାନେ ଉତ୍କଳ ସେବାରେ ଭାରତ ଓ ବିଶ୍ୱସେବା କରିପାରିବୁଁ, ଉତ୍କଳ ଜାତିର ଉନ୍ନତିରେ ମାନବଜାତିର ଉନ୍ନତି ଦେଖିବୁ । ଉତ୍କଳପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ; ଉତ୍କଳ-ହୃଦୟ-ତନ୍ତ୍ରୀରେ ବିଶ୍ୱମାନବ ହୃଦୟର ଗୀତ ଶୁଣିବୁ ।

"ଜଗତ-ସରସେ ଭାରତ-କମଳ,
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ
ଥିଲେ ଯହିଁ ତହିଁ ଭାରତ-ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ-ଶିଳା ଶାଳଗ୍ରାମ
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟଧାମ ।
ସକଳ ସଲିଳ ପଞ୍ଚତୀର୍ଥଜଳ,
ପ୍ରତି ଧର୍ମାଳୟ ମୋର ନୀଳାଚଳ ।"

ଏହି ଜାତୀୟ ଭାବଧାରାର ବିସ୍ତୃତି ଦେଖିଲେ ବିସ୍ମିତ ହେବାକୁ ହୁଏ । ସଂକୀର୍ଣ୍ଣତାରୁ ଦୂରରେ ସମଗ୍ର ମାନବଜାତିପାଇଁ ଗୋପବନ୍ଧୁ ସାହିତ୍ୟର ଉତ୍ତରଳ ବାଣୀ ଓ ବାର୍ତ୍ତା ଏ ଜାତିକୁ ଗୌରବାନ୍ୱିତ କରିଛି, ଉଚ୍ଚଆସନ ଦେଇଛି । ପରାଧୀନ ଜାତିର ମୌନ ପ୍ରାଣକୁ ଆନ୍ଦୋଳିତ କରିଛି । ଗୋଟିଏ ଶ୍ରେଷ୍ଠ କାଙ୍କଣ ଗଛ" ତା'ର ଉଦାହରଣ । ଭାବୁକ ଦାର୍ଶନିକ କବି ଗୋପବନ୍ଧୁ ଗଛଟିର ଅପମୃତ୍ୟୁକୁ ଦେଖି ଗୋଟାଏ ବିରାଟ ଜାତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଚିନ୍ତାରେ ଅବମଗ୍ନ ।

"ସ୍ୱାଧୀନତାପ୍ରିୟେ ଧରି ଅପର ଚରଣ,
ଭାଗ୍ୟ ଅରଜନୁ ଶ୍ରେୟୁ ମଣିଲୁ ମରଣ ।"

ରାଧାନାଥ ପ୍ରକୃତିକୁ ଜାତୀୟ ଭାବାପନ୍ନ କରିଥିଲେ ସତ୍ୟ; କିନ୍ତୁ ମଣିଷକୁ ଏପରି ଜାତିପ୍ରାଣତାରେ କେହି ଆଗରୁ କେବେ ଉଦ୍‌ବୁଦ୍ଧ କରି ଅଛୁକ ?

ଏ ସାହିତ୍ୟର ଚର୍ଚ୍ଚା ସୀମିତ ପରିଧିଭିତରେ ଅସମ୍ଭବ । ସାରଳା ଦାସ ଓ ଜଗନ୍ନାଥ ଦାସଙ୍କ ପରେ ଫକୀରମୋହନଙ୍କ ସାହିତ୍ୟ ଓ ଭାଷାରେ ଏ ଦେଶର ମାଟିବାଣୀ ପ୍ରତିଧ୍ୱନିତ ହେଲା । ସେମାନଙ୍କ ଯୋଗ୍ୟ ଦାୟାଦଭାବରେ ଭାଷା ଓ ଭାବର ମଧୁର ସମନ୍ୱୟରେ ଗୋପବନ୍ଧୁ ଏକ ନୂତନ ଜାତୀୟ ଯୁଗର ସ୍ୱରସ୍ରଷ୍ଟାଭାବରେ ଦେଖା ଦେଇଛନ୍ତି । ତାଙ୍କର ଓ ତାଙ୍କ ସହକର୍ମୀମାନଙ୍କ ଆତ୍ମୋତ୍ସର୍ଗରେ ଆଜିର ଓଡ଼ିଶାରେ ବୃହତ୍ତର ଜାତୀୟ ଜୀବନର ସ୍ୱପ୍ନ ରୂପାୟିତ ହୋଇଛି । ତାଙ୍କ ସାଧନାର ବହୁମୁଖୀ ଧାରାରେ କାବ୍ୟ-କବିତା ଏକ ଜଳଧାରାମାତ୍ର; ଏକ କ୍ଷୁଦ୍ର ପ୍ରତି-ବିମ୍ବ ମାତ୍ର । ଦେଶ ବା ସମାଜ ପରି ସାହିତ୍ୟ ଅଖଣ୍ଡ ଓ ନିୟତ ସାଧନା ଦରକାର କରେ, ମାତ୍ର ସତ୍ୟବାଦୀର ସାଧକମାନଙ୍କ ପକ୍ଷରେ ଏହା ଅସମ୍ଭବ ଥିଲା । ସେମାନେ କାବ୍ୟର କବି ନ ଥିଲେ, ଥିଲେ କର୍ମର କବି । ତଥାପି ସେମାନଙ୍କ ପ୍ରତିଭା, ଶକ୍ତି, ଆବେଗ, ଆଦର୍ଶ ଓ ଉନ୍ମାଦନାରେ ଓଡ଼ିଆ କାବ୍ୟ କବିତା ଜାତୀୟତାର ଉତ୍‌କୂଳ ସ୍ୱର ସଂପଦକୁ ଆପଣାର କରିଛି । ଗରୀୟାନ ହୋଇଛି । ଭାବଜଗତର ଦିଗନ୍ତ ବିସ୍ତାରିତ ହୋଇଛି । ଗତାନୁଗତିକ ପ୍ରକୃତିର ରୂପ ଛବି ଓ ସ୍ୱାଦ୍ୟ ପ୍ରଣୟର ମୋହାବିଷ୍ଟ ସ୍ୱପ୍ନ ଭିନ୍ନ ରୂପ ଧାରଣ କରିଛି । ଅଖଣ୍ଡ ସାହିତ୍ୟ ସାଧନା ଅଭାବରୁ କ୍ରାନ୍ତିକାରୀ ସାହିତ୍ୟିକ ସଫଳତା ଗୋପବନ୍ଧୁଙ୍କ ସମେତ

ଏହି ସମସ୍ତର କବିଙ୍କ ଭାଗ୍ୟରେ ନ ଘଟିଥିଲେ ମଧ୍ୟ ଆଧୁନିକ କାବ୍ୟଧାରାର ଅଭ୍ୟୁଦୟପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବାରେ ଏ ଯୁଗର ସାର୍ଥକତା ରହିଛି । ଭାରତର ସ୍ୱାଧୀନତାକୁ କେନ୍ଦ୍ର କରି ଜାତୀୟ ଆନ୍ଦୋଳନ ସମଗ୍ର ଭାରତୀୟ ସାହିତ୍ୟ-ରାଜ୍ୟରେ ଯେଉଁପରି ମୋଡ଼ ବଦଳାଇଛି ଗୋପବନ୍ଧୁ ନିଜର ଦୃଷ୍ଟି ଓ ସୃଷ୍ଟିକୁ ସେହିପରି ନିୟନ୍ତ୍ରିତ କରି ଓଡ଼ିଆ ସାହିତ୍ୟପାଇଁ ଏକ ନୂତନ ପ୍ରସ୍ଥ ଉନ୍‌ମୋଚିତ କରିଛନ୍ତି । ଓଡ଼ିଆସାହିତ୍ୟର ଇତିହାସରେ ତେଣୁ ଗୋପବନ୍ଧୁ ଏକ ନିଶାଣ ଖୁଣ୍ଟ, ଗୌରବଦୀପ୍ତ ଜାତୀୟ ଯୁଗାଭାସ । ୧୯୪୭ ପର୍ଯ୍ୟନ୍ତ ଏହି ଜାତୀୟ ସାହିତ୍ୟର ଯୁଗ ଲମ୍ବି ଆସିଛି । 'ସବୁଜ' ମଝିରେ କେବଳ ସଜଳ ସ୍ମୃତିମାତ୍ର । ସମସ୍ତ ଓ ଜାତି-ଅସଚେତନ, ନିଷ୍କର୍ମ 'ସବୁଜ'ର ଉଦ୍ଦେଶ୍ୟହୀନ କଳନାଦ ସମସ୍ତର ଆହ୍ୱାନରେ ସ୍ତମ୍ଭୀଭୂତ ହୋଇଛି । ଗୋପବନ୍ଧୁଙ୍କ ଗଢ଼ା ଜାତୀୟ ସାହିତ୍ୟଯୁଗରେ ଏ ସାହିତ୍ୟ କିଛି କାଳ ପରେ ଦେଇଛି ଆତ୍ମଶ୍ୱାସ । ଓଡ଼ିଆସାହିତ୍ୟର ଇତିହାସରେ ତେଣୁ ରାଧାନାଥୋତ୍ତର ଯୁଗକୁ ଭାରତର ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଜାତୀୟ ଯୁଗଭାବରେ ଅଭିହିତ କରାଯିବା ସମୀଚୀନ । ଗୋପବନ୍ଧୁ ଏହି ଜାତୀୟ ଯୁଗର ପ୍ରାରମ୍ଭରେ ଉଜ୍ଜ୍ୱଳ ଆଲୋକସ୍ତମ୍ଭ ଭାବରେ ବିରାଜିତ, ଏକ ପବିତ୍ର ଅଧ୍ୟାୟ ଭାବରେ ସମ୍ମାନିତ । ସେ ପୁଣ୍ୟମୟ ପବିତ୍ର ସ୍ମୃତିର ମୁଁ ଜୟକାର କରୁଛି ।

— – —

# ବନ୍ଦୀର ଆତ୍ମକଥା ଓ
# କବି ଗୋପବନ୍ଧୁ

ଅଧ୍ୟାପକ ଦୀନବନ୍ଧୁ ରଥ

ଗୋପବନ୍ଧୁ ଅଜି ଇହଧାମରେ ନାହାନ୍ତି; ରହିଛି କେବଳ ତାଙ୍କ ଲିଖିତ 'ଧର୍ମପଦ', 'କାରା-କବିତା', 'ବନ୍ଦୀର ଆତ୍ମକଥା' ଜରିଆରେ ଦେଶବାସୀଙ୍କପାଇଁ ଅଖଣ୍ଡ ଉତ୍ସାହ । ଆମେ ତାଙ୍କୁ ଦେଖି ନାହୁଁ ସତ; କିନ୍ତୁ ତାଙ୍କର ଲେଖାଭିତରେ ଆମେ ତାଙ୍କୁ ଦେଖୁଛୁ, ତାଙ୍କର ସାଧନାର ଫଳ ଆମେ ଉପଭୋଗ କରୁଛୁ । ବାସ୍ତବରେ ସେ ଏ ଜାତିର ପିତା । ଜୀବନ୍ତ ମନୁଷ୍ୟ ପରି ତାଙ୍କର କାବ୍ୟକବିତାନିହିତ ବାଣୀ ଆମକୁ କର୍ମପ୍ରେରଣା ଦିଏ । ବୋଧହୁଏ ସତେ ଯେପରି ପାଖେ ପାଖେ ରହି କିଏ କହିଦେଉଛି, ବାଟ କଢ଼ାଇ ନେଉଛି । ସେ ଥିଲେ ଆମ ଅବହେଳିତ ଓଡ଼ିଆଙ୍କର ନେତା, ଉପଦେଷ୍ଟା, ଜନକ । ଆଜ ନେତା ନାହାନ୍ତି, ଅଛି ବରେଣ୍ୟ ନେତାଙ୍କର ପ୍ରାଣସ୍ପର୍ଶୀ ସୁଲଳିତ ବାଣୀ । ମାଟିର ଶରୀର ଭଙ୍ଗୁର, ଭାଜିପଡ଼ିଛି; କିନ୍ତୁ ବାଣୀ ଅଜର ଓ ଅମର । ଇଂରେଜ କବି ଓ୍ୱାର୍ଡ଼ସ୍‌-ଓ୍ୱାର୍ଥ ଯଥାର୍ଥରେ ତେଣୁ କହିଛନ୍ତି—"**It is as immortal as the heart of man**" ଅର୍ଥାତ୍ ଏହି ବାଣୀ ଆତ୍ମା ପରି ଅବିନାଶୀ । ଗ୍ରାମ-ଫୋନରେ ରେକର୍ଡ଼ ହେଲା ପରି ସେହି ଅମରବାଣୀ ବାୟୁମଣ୍ଡଳରେ ପ୍ରତିଧ୍ୱନିତ । ସେ ଆମକୁ ବାଟ କଢ଼ାଇ ନେଇ କହୁଛି—

"ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।"

୧୯୨୩-୨୪ ମସିହାରେ ହଜାରିବାଗ ଜେଲରେ ଗୋପବନ୍ଧୁ ବନ୍ଦୀ ହୁଅନ୍ତି । ଏହି ଦୁଇ ବର୍ଷ କାରାଗାରଜୀବନ ମଧ୍ୟରେ କର୍ମବୀର ଗୋପବନ୍ଧୁ ନିଶ୍ଚେଷ୍ଟ ହୋଇ ବସି ନ ପାରନ୍ତି । ଓଡ଼ିଆଜାତିର ଭବିଷ୍ୟତ ବଂଶଧରମାନଙ୍କପାଇଁ ସେ ଲେଖନୀମୁନରେ ରୂପ ଦିଅନ୍ତି କଲେ ଅମର ଅନୁ-ଶାସନ । 'କାରା-କବିତା' ଓ 'ବନ୍ଦୀର ଆତ୍ମକଥା'ରେ ଧର୍ମପଦ ଓ

ଗୋମାହାତ୍ମ୍ୟରେ ସେହିଭ ଅନୁଶାସନାବଳୀ ଜୀବନ୍ତ ହୋଇଉଠିଛି । ପ୍ରବଳ-ପରାକ୍ରାନ୍ତ, ଇଂରେଜ ଶାସକର ଗୁଳି ଆଗରେ ମଥା ଟେକିବାର ଏକ ଯୁଗରେ ଗୋପବନ୍ଧୁଙ୍କର ଆବିର୍ଭାବ । କେବଳ ଆବିର୍ଭାବ ନୁହେଁ, ସମସ୍ତଙ୍କ ଆଗରେ ମୁକ୍ତିର ଯାତ୍ରା-ମଶାଲ ଧରି ଚାଲିବାର ଦାୟିତ୍ୱ ଓ ପ୍ରତିଜ୍ଞା ନେଇ ତାଙ୍କର ଶୁଭାଗମନ । ପଥର ବା ଲୁହାରେ ଗଢ଼ା ନ ଗଲେ ସେ ଗୁଳି-ଗୋଳା ଭିତରେ ଅହିଂସ ଫକୀର ପଶି ନ ପାରେ । ଓଡ଼ିଆର ପ୍ରକୃତିରୁ ରାଜନୈତିକ ବିବର୍ତ୍ତନ, ଗୃହଯୁଦ୍ଧ ଓ ବନ୍ୟା-ଦୁର୍ଭିକ୍ଷର ତୀବ୍ର କଷାଘାତରେ ବଳ ଖସି ପଡ଼ିଥିଲା । ପଥର ପରି ଟାଣ ଦେହ ତା'ର ଗୋବରପରି ନରମି ଯାଇଥିଲା । ଗୋପବନ୍ଧୁ ଏହିପରି ଏକ ଆତଙ୍କଗ୍ରସ୍ତ ଜନତାର ନେତା ହୋଇ ବାହାରିଥିଲେ; ସେ ଥିଲେ ଲୁହା ଓ ପାଷାଣଠାରୁ ଢେର ଶକ୍ତ । ତାଙ୍କର ବଳିଷ୍ଠ ଲେଖନୀରେ ଯେଉଁ ବାଣୀ ଫୁଟିଉଠିଛି, ତାହା ଯଥାର୍ଥରେ ବୀରର ବାଣୀ । ଜାତୀୟ ବୀରଙ୍କର ହୃଦୟ-କନ୍ଦରରୁ ବାହାରିଛି—

"କାତରତା ସିନା କାପୁରୁଷପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜ ତକେ,
ନ ମରେ ସେ କେବେ ପରାଣ-ଆତଙ୍କେ ।"

ଓଡ଼ିଆ ଜୀବନ ଦିନେ ଥିଲା ବୀରର ଜୀବନ । ଓଡ଼ିଆ ନ ଥିଲା 'ଭାତବାହକ'ର ଜାତି । ସେ ଥିଲା ବୀର-ଜାତି । ଶତ୍ରୁ-ରକ୍ତପାନପିପାସୁ କରବାଳର ଝନତ୍କାର ଶ୍ରବଣରେ ଓଡ଼ିଆ ଯୁବକ ଉନ୍ମାଦିତ ହୋଇ ଉଠୁଥିଲା । ସେ ଯୁଗରେ ବୀର କହିଲେ, ଆମେ ବୁଝୁଥିଲୁ ହାତାହାତି ସମରରେ ଯେ ହତ୍ୟା କରେ ଓ ରାଜ୍ୟ ପରେ ରାଜ୍ୟ ଜୟ କରି ନିଜର ଗୌରବ ବୃଦ୍ଧି କରେ । ଗୋପବନ୍ଧୁଙ୍କ କାଳକୁ 'ବୀର'ର ଏ ସଂଜ୍ଞା ବଦଳି ଯାଇଥିଲା । ପ୍ରାତଃସ୍ମରଣୀୟ ବକ୍ସି ଜଗବନ୍ଧୁ ଓ ଜୟୀ ରାଜଗୁରୁଙ୍କଠାରେ ପୂର୍ବସଂଜ୍ଞା ପ୍ରଯୁଜ୍ୟ; କିନ୍ତୁ ଗୋପବନ୍ଧୁ ଥିଲେ ଏକ ନୂତନ ଯୁଗର ନୂତନ ଧରଣର ବୀର । ପବଂ ବୀରପୁରୁଷମାନଙ୍କ ପରି ସାହସ, ଧୈର୍ଯ୍ୟ ଓ ନିଷ୍ଠା ଆଦି ତାଙ୍କର ଥିଲା ସତ, ମାତ୍ର ନ ଥିଲା ଢାଲ, ତରବାରି । ଦେହରେ ଜଡ଼ିହୋଇଥିଲା ସାଞ୍ଜୁ ବଦଳରେ ଖଦଡ଼ ଚାଦର, ଢାଲ ବଦଳରେ ଶୁକ୍ଳକେଶ ଓ ତରବାରି ବଦଳରେ ହାତରେ ଲେଖନୀ । ଲେଖନୀ ହିଁ ତରବାରିଠାରୁ ମଜଭୁତ ପ୍ରମାଣିତ ହେଲା । କୁହାଯାଇଛି—

"Pen is mightier than sword ।" ଲେଖନୀରୂପ ବଳିଷ୍ଠ ଅସ୍ତ୍ର ପ୍ରୟୋଗରେ ସେ ଥିଲେ ଅଦ୍ୱିତୀୟ ରଥୀ । ସମାଲୋଚକ କାର୍‌ଲାଇଲ ଯଥାର୍ଥରେ ଲେଖକ ଓ କବିମାନଙ୍କୁ ଏକଶ୍ରେଣୀର ବୀର ବୋଲି ସମ୍ମାନ ଦେଇଅଛନ୍ତି । ଗୋପବନ୍ଧୁ ନୂତନ ଯୁଗର ଜାତୀୟ ବୀର । ତାଙ୍କର ବାଣୀ ସର୍ବଦା ବୀର୍ଯ୍ୟମୟ । କବି ତେଣୁ ଗାଇଛନ୍ତି—

"ବଳ ବା ବିଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
× × ×
ଅହିଂସବଳରେ ଯେହୁ ବଳୀୟାନ,
ଏ ରଣ ପ୍ରାଙ୍ଗଣେ ତା'ର ଏକା ସ୍ଥାନ ।"

ଦିନେ ହୁଏତ ଲୋକେ ଜୀବନର ସାଫଲ୍ୟପାଇଁ ଭଗବାନଙ୍କର ଆଶ୍ରା ନେଉଥିଲେ, ଯୋଗରେ ବସୁଥିଲେ । କେହି କେହି 'ରାଧା, ରାଧା' ହୋଇ ଜୀବନର ପୂର୍ଣ୍ଣତା ଆଶା କରୁଥିଲେ, ନାରୀର ପ୍ରଣୟୁନିଶାରେ ବିଭୋର ହେବାରେ ମର୍ତ୍ତ୍ୟଜୀବନର ସାଫଲ୍ୟବୋଧ ବି ଅନେକଙ୍କର ଥିଲା । ଗୋପବନ୍ଧୁଙ୍କ କାଳକୁ ଜୀବନର ଏହି ଦର୍ଶନ ବଦଳିଯାଇଛି । ଦେଶର ପରିସ୍ଥିତି ଏହି ପରିବର୍ତ୍ତନପାଇଁ ଏକାନ୍ତଭାବରେ ଦାୟୀ । ଭାରତଜନନୀ ପରାଧୀନତାର ନାଗପାଶରେ ଆବଦ୍ଧ । ଜନନୀର ଆର୍ତ୍ତନାଦରେ ଭାରତର ପ୍ରତ୍ୟେକ ସନ୍ତାନର ପ୍ରାଣରେ ବ୍ୟାକୁଳତା ମୂର୍ତ୍ତିମନ୍ତ । ଦିନେ ଯୁବକ ଗୌତମ ମାନବଜାତିର କଲ୍ୟାଣକାମନାରେ ପ୍ରିୟତମା ପତ୍ନୀର କୋମଳ ବାହୁସ୍ପର୍ଶ ଓ ଶିଶୁ ସନ୍ତାନର ସମସ୍ତ ଆକର୍ଷଣକୁ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଥିଲେ ଓ ଆକୁମାରୀ-ହିମାଚଳ ମୁକ୍ତିର ମୈତ୍ରୀବାଣୀ ପ୍ରଚାର କରିଥିଲେ । ଏ ଯୁଗରେ ଭାରତର ଯୁବକ ନିଜର ଷୋଡ଼ଶୀ ରୂପସୀ ପତ୍ନୀକୁ ବିରହାଗ୍ନିରେ ନିକ୍ଷେପ କରି ସ୍ୱାଧୀନତା-ସଙ୍ଗୀତ ଗାନ କରି ଆକାଶ ପାତାଳ ପ୍ରକମ୍ପିତ କରିଦେଲା । ଜାତୀୟ ଚେତନାର ଏହି ନବୀନ ଯୁଗରେ ଗୋପବନ୍ଧୁଙ୍କର କର୍ମଜୀବନ ପରିବ୍ୟାପ୍ତ । ସେ ମଧ୍ୟ ଦିନେ ରୁଗ୍ଣ ସନ୍ତାନସହ ଶୋକୁଦ୍ୟମାନା ପତ୍ନୀଙ୍କୁ ତ୍ୟାଗକରି ବନ୍ୟାବିପନ୍ନ ନରନାରୀଙ୍କର ସେବାରେ ମନପ୍ରାଣ ଢାଳି ଦେଇଥିଲେ । ଜନ୍ମଭୂମିର ସେବାପାଇଁ ସେ ନିଜେ ଦଧୀଚିଙ୍କ ପରି ଦେହତ୍ୟାଗ କଲେ । ସେ "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ବାଣୀର ସାର୍ଥକତା ଉପଲବ୍‌ଧି କରି ତଦନୁଯାୟୀ

କାର୍ଯ୍ୟ କରିଗଲେ; ଉତ୍କଳର ନରନାରୀଙ୍କ ଆଗରେ ଜୀବନର ନୂତନ ଆଦର୍ଶ ଉପସ୍ଥାପନ କରିଦେଇ ଗଲେ । ଜୀବନର ଏହି ନୂତନ ଦର୍ଶନ ଆତ୍ମୋତ୍ସର୍ଗ ଉପରେ ପର୍ଯ୍ୟବସିତ ହୋଇଛି । ଦେଶର, ଦଶର ସେବାରେ ଆତ୍ମବଳୀ ଦାନ କଲେ ମାନବ-ଜୀବନର ସାଫଲ୍ୟ ଉଛି—ଏହି ସାରକଥା ସେ ଏ ଜାତିକୁ ଶିକ୍ଷା ଦେଇଛନ୍ତି—

"ପୂର୍ବପୁରୁଷର ପବିତ୍ର ଶ୍ମଶାନ,
ଦେଶର ଜାତିର ଗଉରବ ଗାନ ।
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ,
ଉଦ୍ଧରିବାପାଇଁ କଲେ ତନୁ କ୍ଷୟ,
ମାନବଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?"

ଗୋପବନ୍ଧୁଙ୍କର ବାଣୀ ଭବିଷ୍ୟତଦ୍ରଷ୍ଟାର ସାର୍ଥକ ବାଣୀ । କବି ଓ ସାହିତ୍ୟିକମାନେ ବାସ୍ତବରେ ଭବିଷ୍ୟତ୍ ବକ୍ତା (Prophets) । ସେମାନେ ଆଜି ଯାହା କହନ୍ତି, କାଲି ତାହା ସତ୍ୟରେ ପରିଣତ ହୁଏ । ସମାଲୋଚକ ସି. ହେନେରୀ ଓ୍ୟାରେନ କହିଛନ୍ତି—

"What we think to-morrow, the poet was thinking yesterday, he is the conscious expression in advance, of the most indicative thought tendencies of his time."

ଆମେ ଯାହା କାଲି ଭାବିବୁ, କବି ତାହା ଗତକାଲି ଭାବିଥିଲା, ସେ ତା'ର ଯୁଗର ପ୍ରଧାନ ଚିନ୍ତାଧାରାର ଆଗୁଆ ପ୍ରକାଶକ ।' ଗୋପବନ୍ଧୁ ଥିଲେ ଜଣେ କବି । ଜାତି ତଥା ସମାଜର ଭାବଧାରା ସହିତ ସେ ଓତପ୍ରୋତଭାବରେ ଜଡ଼ିତ ଥିଲେ । ସାମନ୍ତବାଦୀ ସଭ୍ୟତା ଆଉ ମୁଣ୍ଡ ଟେକି ଦୁନିଆ ଦୁଆରେ ରହିପାରିବ ନାହିଁ, ଏକଛତ୍ରଶାସନର ନ୍ୟାୟସଙ୍ଗତ ଭାବରେ ବଞ୍ଚିରହିବାର ଦାବୀ ରହିବ ନାହିଁ, ଗଣତନ୍ତ୍ରର ପ୍ରତିଷ୍ଠା ହେବ, ସ୍ୱାଧୀନତା-ସଂଗ୍ରାମରେ ବିଜୟ ନିଶ୍ଚିତ--ଏହି ଭବିଷ୍ୟତ୍ ବାଣୀ ସେ ଆମକୁ ଶୁଣାଇଲେ । ଆଜି ଆମ ଦେଶ ମୁକ୍ତ ହୋଇଛି । ସାମ୍ରାଜ୍ୟବାଦୀ ଶାସନ ପୃଥିବୀପୃଷ୍ଠରୁ ଲୁପ୍ତ ହେବାକୁ ଯାଉଛି । ବ୍ରିଟିଶ-ସିଂହ ଆଜି ଗଳିତନଖଦନ୍ତ ଓ ପଳିତକେଶ ହୋଇ ଭାରତବର୍ଷରୁ ବିଦାୟ ନେଇଛି । ସ୍ୱରାଜର ସୁବର୍ଣ୍ଣ ସମ୍ଭୋଗ ଲୋକଙ୍କୁ ଶାସନାଧିକାର ଦେଇ ଗୋପବନ୍ଧୁଙ୍କ ୧୯୨୩ ମସିହାର ପରିକଳ୍ପନାକୁ ସାର୍ଥକ କରିଛି ।

"ରହିବ ନାହିଁ ଏ ମାତ୍ର କାଳେ କାଳେ,
ନାଶଯିବ ସତ୍ୟ-ନ୍ୟାୟ୍ୟ-କରବାଳେ ।
ପ୍ରଜାଲାଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜାଲାଗି ଇନ୍ଦ୍ର କରେ ଜଳବୃଷ୍ଟି ।
ପ୍ରଜାଲାଗି ଉଦେ ରବି ଶଶୀ ତାରା,
ପ୍ରଜାଲାଗି ବହେ ଶତ ନଦୀଧାରା ।
ପ୍ରଜାଲାଗି ରାଜ୍ୟ ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।"

ଗୋପବନ୍ଧୁଙ୍କର ବାଣୀ ସର୍ବଥା ସହାନୁଭୂତିଶୀଳ ଓ କରୁଣ । "**Our sweetest songs are those that, tell us saddest thoughts.**" କାରୁଣ୍ୟପୂର୍ଣ୍ଣ ଗୀତି ବାସ୍ତବରେ ସୁମିଷ୍ଟ । କବିଙ୍କ କବିତାର ଛନ୍ଦେ ଛନ୍ଦେ ଫୁଟିଉଠିଛି ପରଦୁଃଖ-କାତରତା । ହଜାରିବାଗ ଜେଲକୁ ପୁଲିଶ ପହରାରେ କବି ରେଲଗାଡ଼ିରେ ଯାଉଛନ୍ତି । ମନେ ପଡ଼ୁଯାଉଛି, କନିକା ପ୍ରଜାଙ୍କର ଦୁଃଖ, ଭଦ୍ରଖ ତଥା ଜେନାପୁରବାସୀଙ୍କର ନିର୍ଯ୍ୟାତନା ଆଦି । ଜେନାପୁରରେ ଓହ୍ଲାଇ ଲୋକଙ୍କର ଦୁଃଖ ଅପନୋଦନ କରିବା-ପାଇଁ କବିପ୍ରାଣ ବ୍ୟାକୁଳ ହୋଇଉଠିଛି । ଜେଲ-ଜୀବନର ଦୁର୍ବିସହ କଷଣ ଚିନ୍ତା ତାଙ୍କ ମନକୁ ଟିକିଏ ହେଲେ ଛୁଇଁ ନାହିଁ, ଉତ୍କଳର ପୁର-ପଲ୍ଲୀରେ ସେ ଯେଉଁ କରୁଣ ଦୃଶ୍ୟ ଦେଖିଯାଇଅଛନ୍ତି, ଶୟନେ, ସ୍ୱପନେ କିବା ଜାଗରଣେ ତାହାହିଁ ତାଙ୍କୁ ବ୍ୟଥା ଦେଇଛି । କୃଷୀକୁଳ ଦୁଇବେଳା ପେଟପୂରା ଖାଇବାକୁ ପାଉ ନାହାନ୍ତି, ପୂର୍ବର ପାଇକ ପ୍ରଧାନମାନେ ଆଜି ବଡ଼ଦାଣ୍ଡରେ ବସିଛନ୍ତି, ଓଡ଼ିଆଝିଅ ଯୌବନ ଢାଙ୍କିବାକୁ ଖଣ୍ଡେ କନା ପାଇ ପାରୁ ନାହିଁ, ରୋଗ ଓ ଅନାହାରରେ ଘରକଣରେ ଲୋକ ସଡ଼ି ମରୁଛନ୍ତି, ପେଟଜାଳା ସହି ନ ପାରି ଓଡ଼ିଆପୁଅ କାଳମାଟି, କଲିକତା ଓ ରେଙ୍ଗୁନକୁ ଚାଲିଯାଉଛି, ଗାଁର ଭାଗବତଘର ଶୂନ୍ୟ ପଡ଼ିଛି, ଗାଁଦାଣ୍ଡରେ ଶିଶୁଙ୍କର ମେଳା ନାହିଁ—ଏହି ସବୁ ଦୃଶ୍ୟ ତାଙ୍କର ସ୍ମୃତିପଟରେ ଭାସିଯାଉଛି । କରୁଣାର ଜୀବନ୍ତ ପ୍ରତିମୂର୍ତ୍ତି ଗୋପବନ୍ଧୁଙ୍କର ଅନ୍ତରବାଣୀ ପାଠକପ୍ରାଣରେ କରୁଣାର ମୃଦୁ-ମୂର୍ଚ୍ଛନା ତାଳ ଅନବଦ୍ୟ ରୂପ ପାଇଛି ମହାତ୍ମା ଗାନ୍ଧିଙ୍କ ଉକ୍ତିରେ—

"ଦେଖି ଏ ଦାରୁଣ ଦୃଶ୍ୟ ଦ୍ରବେ ମନ
ଅନଶନେ ଆଜ ତେଜନ୍ତି ଜୀବନ ।

ବଞ୍ଚିବାରୁ ବଳି ଦେଖି ଏ କଷଣ
ଶତଗୁଣେ ଶ୍ରେୟ ମଣେ ମୁଁ ମରଣ ।"

ଗୋପବନ୍ଧୁଙ୍କ ଲେଖାରେ ସ୍ୱାର୍ଥର କାମନା ନିହିତ ହୋଇ ନାହିଁ । ସ୍ୱାଧୀନତା-ସଂଗ୍ରାମରେ ଭାଗନେଇ ଶହୀଦର ସମ୍ମାନ ପାଇବା ନିମିତ୍ତ ସେ ଲାଳାୟିତ ନ ଥିଲେ, ଉଚ୍ଚପଦବୀ ଲାଭପାଇଁ ସେ କାରାବରଣ କରି ନ ଥିଲେ । ଦେଶବାସୀଙ୍କ ଆଖିରୁ ଲୁହ ପୋଛିବା ପାଇଁ ସେ ନିଜର ମାନ, ଅପମାନ ଓ ସ୍ୱାର୍ଥକୁ ପଛରେ ପକାଇ କାର-ବନ୍ଧନରେ ସ୍ୱାଧୀନତା-ସଂଗ୍ରାମରେ ସକ୍ରିୟ ଭାଗ ନେଇଥିଲେ । ସେ ବୁଝିଥିଲେ ଯେ, ସ୍ୱାଧୀନତା-ପ୍ରାପ୍ତିରେ ପ୍ରତ୍ୟେକ ଭାରତୀୟ ତଥା ଉତ୍କଳୀୟର ଦୁର୍ଗତି ଦୂର ହେବ । 'ଶରୀରଂ ବା ପାତୟେତ୍ କାର୍ଯ୍ୟଂ ବା ସାଧୟେତ୍' ନୀତିରେ ସେ ଆତ୍ମଦାନ କରିବାକୁ କୁଣ୍ଠା ପ୍ରକାଶ କରି ନାହାନ୍ତି । ଦେଶର ମୁକ୍ତିପାଇଁ ସେ ସର୍ବଦା ପ୍ରାଣଦେବାକୁ ପ୍ରସ୍ତୁତ । ଏ କଥା କବିତାରେ ଗାଇଲେ ଓ କାର୍ଯ୍ୟରେ ବି କରିଗଲେ । ପ୍ରବାସରେ ଓଡ଼ିଆମାନଙ୍କର ସେବାରେ ଆତ୍ମନିୟୋଜିତ କରିବା ସମୟରେ ସେ ରୋଗଗ୍ରସ୍ତ ହୁଅନ୍ତି ଏବଂ ଫେରିଆସି ସତ୍ୟବାଦୀର ମଞ୍ଜୁ ଚୁଇଅନା-କୁଞ୍ଜରେ ସମାଧି ଲଭନ୍ତି । ଏ ମୃତ୍ୟୁ ବାସ୍ତବରେ ଦୈବାଧୀନ ବୋଲି ମନେହୁଏ ନାହିଁ, ବରଂ ଏହା ସ୍ୱେଚ୍ଛାକୃତ ଆତ୍ମବଳୀ ପରି ବୋଧହୁଏ । 'ବନ୍ଦୀର ଆତ୍ମକଥା'ରେ କବି ନିଷ୍କାମର ବାଣୀ ଶୁଣାଇ ନାହାନ୍ତି ସତ; କିନ୍ତୁ ଯେଉଁ ବାଣୀ ଶୁଣାଇଛନ୍ତି, ତାହା ନିଃସ୍ୱାର୍ଥପରତା, ବିଶ୍ୱହିତ ତଥା ଜାତୀୟତାର ମଧୁର ବାଣୀ । କବି ଗାଇଛନ୍ତି—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟପଥେ ଯେତେ ଗାଡ଼
ପୂରୁ ପଡ଼ି ତହିଁ ମୋର ମାଂସ ହାଡ଼ ।
ସ୍ୱାଧୀନତା-ପଥେ ଟିକେ ହେଲେ ନର
ମୋ ଜୀବନଦାନେ ହେଉ ଅଗ୍ରସର ।

କବିଙ୍କର ବାଣୀ ନିରାଶାର ନୁହେ, ବରଂ ଆଶା ଓ ବିଶ୍ୱାସର । ଦେଶର ଦୁର୍ଗତିରେ ତାଙ୍କର ପ୍ରାଣ କାନ୍ଦି ଉଠିଛି ସତ; କିନ୍ତୁ ହୃଦୟ ଆଶା, ସାହସ ଓ ଧୈର୍ଯ୍ୟ ହରାଇ ନାହିଁ । 'ମହାତ୍ମା-ସାଧନ ମହାତ୍ମା-କଷଣ' କେବେ ଅକାରଣ ହୁଏ ନାହିଁ; ତେଣୁ ମହାତ୍ମା ଗାନ୍ଧିଙ୍କର

ଅସହଯୋଗର ତପସ୍ୟା ବିଫଳ ହେବ ନାହିଁ—ଏ ବିଶ୍ୱାସ ତାଙ୍କର ଥିଲା । ନିରାଶ ନ ହୋଇ ସତ୍ୟ-ଶାନ୍ତି-ପଥରେ ଆଗେଇଲେ ସାଫଲ୍ୟ ସୁନିଶ୍ଚିତ—ଏହା ତାଙ୍କର ଦୃଢ଼ ଧାରଣା ଥିଲା । ଉତ୍କଳର ନରନାରୀଙ୍କର ଦୁଃଖ ଫେରିବ, ଉତ୍ପୀଡ଼ନାଧାନ ସତେ ଗଜା ହେବ ଏଭଳି ଭାବନାରେ କବି ବିଗ୍ରହବି ହୋଇ ନାହାନ୍ତି । ନିରନ୍ନ ଜନତାର କଙ୍କାଳସାର ଶରୀର, ହା-ଅନ୍ନର ଆର୍ତ୍ତସ୍ୱର, କୋଟରଗତ ଚକ୍ଷୁର ମିନତି ଗୋପବନ୍ଧୁଙ୍କ ପ୍ରାଣକୁ ଥରାଇଦେଇଛି ସତ; କିନ୍ତୁ ଧୈର୍ଯ୍ୟଶୂନ୍ୟ କରି ପାରି ନାହିଁ । ତେଣୁ ସେ ଆଶାମନ୍ଦାକିନୀ ପ୍ରବାହିତ କରାଇ ଅଭୟବାଣୀ ଶୁଣାଇଗଲେ—

"ନ ହୁଅ ନିରାଶ ନ ହୁଅ ଦୁଃଖିତ
ଉତ୍କଳର ଦେଖି ଦୁଃଖମୟ ଚିତ୍ର ।
ସୁଖ-ଦୁଃଖ-ଚକ୍ର ଘୂରେ ନିରନ୍ତର
ଏକ ପରେ ଆନ ଆସିବ ନିକର ।
× × × ×
ଗଲ ସତ୍ୟପଥେ ନାହିଁ ଡର ଭୟ
ଅସହଯୋଗର ବିଜୟ ନିଶ୍ଚୟ ।"

ଗୋପବନ୍ଧୁଙ୍କର ଲେଖନୀ ବିଶ୍ୱମୈତ୍ରୀର ବାଣୀ ତୋଳିଛି । ସ୍ୱାଧୀନତା-ସଂଗ୍ରାମର ଅଗ୍ରଗତି ହେବା ସଙ୍ଗେ ସଙ୍ଗେ ସାମ୍ପ୍ରଦାୟିକତାର ଅଙ୍କୁରୋଦ୍‌ଗମ ହୋଇ ଆସୁଥିଲା । ଗୋପବନ୍ଧୁଙ୍କ ସମୟରୁ ହିନ୍ଦୁ ମୁସଲମାନ ବିଭେଦର ଉନ୍ମେଷ ପ୍ରକାଶ ପାଉଥିଲା । ଭାରତର ଅବନତିର ମୂଳରେ ଏହି ଭେଦଭାବ ଐତିହାସିକ କାଳରୁ ପରିଲକ୍ଷିତ । ସାଂପ୍ରଦାୟିକତାର ବିଷ ଭାରତର ମୁକ୍ତିଲାଭ ପଥରେ ଯେ ଘୋର ଅନ୍ତରାୟ, ଏକଥା ସେ ସମୟର ଜନନାୟକମାନେ ଉପଲବ୍ଧି କରିଥିଲେ ଏବଂ ତା'ର ପରିଣାମ ଚିନ୍ତାରେ ଆତଙ୍କିତ ହେଉଥିଲେ । ଏକତାକାମୀ ଉଦାର ମହାନୁଭବ କବି ଗୋପବନ୍ଧୁ ଓଡ଼ିଶାରେ ଏହି ହୀନ ସାଂପ୍ରଦାୟିକତାର କ୍ଷୀଣ ପ୍ରକାଶ ଦେଖି ମର୍ମାହତ ହୋଇଥିଲେ । ଜେଲଯାତ୍ରା ସମୟରେ ଭଦ୍ରଖ ଷ୍ଟେସନରେ ଗାଡ଼ି ନ ପହଞ୍ଚୁଣୁ ତାଙ୍କର ମନରେ ଦାରୁଣ ଦୁଃଖ ଜାତ ହୋଇଛି । ତାଙ୍କର ଅନ୍ତରର ବ୍ୟଥା ଲେଖନୀମୁନରେ ଉଦ୍‌ଗୀର୍ଣ୍ଣ ହୋଇ ଏକତା ତଥା ମୈତ୍ରୀର ଆବାହନୀ ତୋଳିଛି—

"ହିନ୍ଦୁ, ମୁସଲମାନ, ବୌଦ୍ଧ ଖ୍ରୀଷ୍ଟିଆନ,
ଶିଖଜୈନ ଯେତେ ଭାରତ-ସନ୍ତାନ,
ଯେତେ ଧର୍ମ ଯେତେ ବର୍ଣ୍ଣ ଜାତି କୁଳ
ଭାରତଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ
ଏକସ ଅନୁଭୂ, ଏକସ ଶ୍ମଶାନ ।
ଏକ କର୍ମଖେଳ ଏକ ମାତୃପଦେ
କର ଏକପ୍ରାଣ ସମ୍ପଦ-ବିପଦେ ।
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହିଭାବେ ସ୍ୱରାଜ୍ୟ ପ୍ରାପତି ।"

ଗୋପବନ୍ଧୁ ପଲ୍ଲୀର ବର୍ଣ୍ଣନାରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଅବଲୋକନ କରି ବିଭୋର ହୋଇ ନାହାନ୍ତି । ପଲ୍ଲୀପ୍ରାଣ ଗୋପବନ୍ଧୁ ଅନ୍ୟାନ୍ୟ ସୌନ୍ଦର୍ଯ୍ୟପିପାସୁ କବିଙ୍କ ଭଳି କେବଳ ବାହ୍ୟ ସୌନ୍ଦର୍ଯ୍ୟରେ ଭୁଲିବାର ପାତ୍ର ନ ଥିଲେ । ପଲ୍ଲୀର ଦୁଃଖଦୁର୍ଦ୍ଦଶା ସେ ନିଜେ ଅଙ୍ଗେ ନିଭାଇଥିଲେ । ପଲ୍ଲୀର ଦୁର୍ଦ୍ଦଶାର କାରଣମାନ ସେ ଉତ୍ତମରୂପେ ହୃଦୟଙ୍ଗମ କରିଥିଲେ । ସାହୁକାର ଓ ଜମିଦାରମାନଙ୍କର ଅତ୍ୟାଚାର, କରଭାର, ଗାଁ ଟାଉଟରଙ୍କର କୂଟନୀତି, ଅନ୍ଧ କୁସଂସ୍କାର, ସ୍ୱାର୍ଥବୁଦ୍ଧି, ବ୍ରିଟିଶଶାସନର ହନ୍ତମନ୍ତ ଖେଳ ପଲ୍ଲୀର ଅବନତି ମୂଳରେ ବିଦ୍ୟମାନ । କବି ସେସବୁ ନିଜେ ଦେଖିଛନ୍ତି ଓ ଦେଖାଇ ଦେଇଛନ୍ତି । ଭାରତ ଗ୍ରାମ-ବହୁଳ ଦେଶ । ଦେଶର ସର୍ବାଙ୍ଗୀନ ବିକାଶ ପଲ୍ଲୀର ଉନ୍ନତି ଉପରେ ନିର୍ଭର କରେ; ତେଣୁ ସେ ନାନା ଦର୍ଶନ ଓ ନିଦର୍ଶନ ନେଇ ବ୍ୟବସ୍ଥାପକ ଭଳି ବ୍ୟବସ୍ଥା ଦେଇଯାଇଛନ୍ତି । ସମାଲୋଚକ ଇଟ୍ସଙ୍କ ଭାଷାରେ Poet **are the unacknowledged legislators of the world"** ଅର୍ଥାତ୍ କବିମାନେ ପୃଥିବୀର ଅସ୍ୱୀକୃତ ବ୍ୟବସ୍ଥାପକ । ଗୋପବନ୍ଧୁ ପଲ୍ଲୀର ଅନ୍ତରକୁ ଯେପରି ବୁଝିଥିଲେ, ଅନ୍ୟ କେହି ସେପରି ବୁଝିଥିବାର ବୋଧ ହୁଏ ନାହିଁ । ସାନ ବଡ଼ର ବିଚାର, ମାନ-ଅଭିମାନ ତ୍ୟାଗକରି ପଞ୍ଚାୟତରାଜ ସ୍ଥାପନର ବ୍ୟବସ୍ଥା ସେ ପ୍ରଥମେ ଦେଇ ଯାଇଥିଲେ । ବିଦେଶୀ ବସ୍ତ୍ରତ୍ୟାଗ, ହାତକଟା ସୂତାତିଆରି ବସ୍ତ୍ରର ବ୍ୟବହାରପାଇଁ ସେ ଉପଦେଶ ଦେଇ ଯାଇଛନ୍ତି । ମାମଲମକଦ୍ଦମାର ହାତରୁ ରକ୍ଷାପାଇବାପାଇଁ ଏବଂ ଦାନା

କନାର ଅଭାବ ଏଡ଼ାଇବାନିମିତ୍ତ ତାଙ୍କର ବ୍ୟବସ୍ଥା ବାସ୍ତବିକ ଆଦର୍ଶରୂପେ ଗ୍ରହଣୀୟ । ଜାତିର ବ୍ୟବସ୍ଥାପକ ଗୋପବନ୍ଧୁ ଗ୍ରାମଗୁଡ଼ିକୁ ଲକ୍ଷ୍ୟ ରଖି କହିଥିଲେ—

"ସ୍ୱରାଜ୍ୟ ଧରମେ ନାହିଁ ଭେଦଜ୍ଞାନ
ସମସ୍ତେ ଯେ ଏକ ମାତାର ସନ୍ତାନ ।
ଏକା କୋଳେ ଜନ୍ମ ଏକା କୋଳେ ଖେଳ
ଏକା କୋଳେ ଶଯ୍ୟା ହେଲେ ଶେଷବେଳ ।
ଗୃହରେ ଅରଟ ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକମତ ।
ସ୍ୱରାଜ୍ୟ ସାଧନେ ଏହି ତିନ ପଦ,
ପାଳିଲେ ଖଣ୍ଡିବ ଉତ୍କଳ-ବିପଦ ।"

ତାଙ୍କର ବାଣୀ ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟରେ ଦୀପ୍ତିମନ୍ତ । ଈଶ୍ୱରୈକନିଷ୍ଠା, ସତ୍ୟ ଅହିଂସାରେ ବିଶ୍ୱାସ କବିତାର ଛନ୍ଦେ ଛନ୍ଦେ ଫୁଟି ଉଠିଛି । ଉତ୍କଳର ଦୁର୍ଦ୍ଦଶାରେ ବ୍ୟଥିତ କବି ନୀଳାଚଳ-ନାଥଙ୍କର ଶରଣାପନ୍ନ ହୋଇଛନ୍ତି । ଭାରତୀୟ ନରନାରୀଙ୍କର ଅନ୍ତରର କାମନା 'ସ୍ୱାଧୀନତା ପ୍ରାପ୍ତି' ପାଇଁ ସେ ସେହି ନୀଳାଚଳ-ନାଥଙ୍କୁ ଗୁହାରି କରିଛନ୍ତି, ନାରାୟଣଙ୍କଠାରେ ପ୍ରାର୍ଥନା କରିଛନ୍ତି । ନାରାୟଣଙ୍କୁ ଉତ୍କଳର ପ୍ରକୃତ ନେତାରୂପେ ନେଇ ସ୍ୱୀୟ ନିରହଙ୍କାରିତାର ପରିଚୟ ଦେଇଛନ୍ତି । ଉତ୍କଳବାସୀଙ୍କର ଦୁର୍ଗତି ଦେଖି ନୀଳାଚଳପତି ଦାରୁଭୂତ ହୋଇଥିବାର ପରିକଳ୍ପନାରେ ଦେଶପ୍ରାଣତା ତଥା ଭକ୍ତିମତ୍ତା ବେଶ ଫୁଟି ଉଠିଛି । ଧର୍ମ, ସତ୍ୟ, ନ୍ୟାୟପଥରେ ଶାନ୍ତିସ୍ଥାପନ କରିବା ନିମିତ୍ତ କବି-ଲେଖନୀ ନିର୍ଦ୍ଦେଶ ଦେଉଛି । ଈଶ୍ୱରୈକନିଷ୍ଠ ଗୋପବନ୍ଧୁ 'ସାନନ୍ଦୀ ଚଣ୍ଡବିଦାରିଣୀ ଭଦ୍ରକାଳୀ ସଂକଟତାରିଣୀ'ଙ୍କୁ ପ୍ରଣତି ଜଣାଇଛନ୍ତି । ଉତ୍କଳର ସର୍ବଦେବଦେବୀଙ୍କୁ ନୀଳାଚଳନାଥଙ୍କ ସମକ୍ଷରେ ଉତ୍କଳବାସୀଙ୍କର ଦୁଃଖ ଅପନୋଦନ କରିବାନିମିତ୍ତ ଗୁହାରି କରିବାକୁ ସେ ପ୍ରାର୍ଥନା କରିଛନ୍ତି । ନୀଳାଦ୍ରିପତି ତାଙ୍କର ସର୍ବସ୍ୱ ପଥପ୍ରଦର୍ଶକ । ମୂଳତଃ ଗୋପବନ୍ଧୁ ସତ୍ୟ, ନ୍ୟାୟ, ଅହିଂସାର ସେବକ । ପାଠକପ୍ରାଣରେ ତାଙ୍କର କବିତାରାଜି ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟ ପ୍ରସ୍ଫୁଟନରେ ବାସ୍ତବରେ ସକ୍ଷମ ହୋଇଛି ।

ପରିଶେଷରେ ଏତିକି କୁହାଯାଇପାରେ ଯେ, 'ବନ୍ଦୀର ଆତ୍ମକଥା'ରେ କବି ଗୋପବନ୍ଧୁଙ୍କର ଅମରବାଣୀ ତାଙ୍କର ହୃଦୟକନ୍ଦରରୁ ସ୍ୱତଃ ନିର୍ଗତ ହୋଇ ସ୍ୱଚ୍ଛସାବଲୀଳ ଗତିରେ ପ୍ରବହମାନ । କବିବାଣୀ ଶାଶ୍ୱତ ସତ୍ୟର ଦୀପ୍ତିରେ ମହୀୟାନ୍ । ତାହା ସହାନୁଭୂତିବ୍ୟଞ୍ଜକ, କରୁଣାତ୍ମକ, ଜାତୀୟଭାବଉଦ୍‌ବୋଧକ ତଥା ଭକ୍ତିମୂଳକ । ସେଥିରେ ତଥାକଥିତ ସୌନ୍ଦର୍ଯ୍ୟସୃଷ୍ଟି ନାହିଁ, ଅଛି ସତ୍ୟ ଓ ନୈତିକତାର ସ୍ୱର୍ଗୀୟ ସୁଷମା । ସେହି ବାଣୀ ଯୁଗେ ଯୁଗେ ବିଶ୍ୱବାସୀଙ୍କର ଅନୁସରଣୀୟ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

---